# ଏବେ ହର୍ଲିକ୍ସ
# ଅତିରିକ୍ତ କ୍ୟାଲସିୟମ ସହ




Anil Kumar Panigrahy



"ବଢ଼ିଲା ପିଲାମାନେ ଅଧିକ କ୍ୟାଲସିୟମ ଆବଶ୍ୟକ କରନ୍ତି।"

ବର୍ତ୍ତମାନ ହରଲିକସ୍ ଅତିରିକ୍ତ କ୍ୟାଲସିୟମରେ ସମୃଦ୍ଧ—ଯାହା ବଢ଼ିଲା ପିଲାମାନଙ୍କର ଶକ୍ତ ଦାନ୍ତ ଓ ସୁସ୍ଥ ହାଡ ଗଠନ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ଏବଂ ସମଗ୍ର ପରିବାରର ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଏକାନ୍ତ ଜରୁରୀ।

ହରଲିକ୍ସ, ଶକ୍ତି ଓ ସାମର୍ଥ୍ୟ ଯୋଗାଉଥିବା ପ୍ରୋଟିନ୍, ଭିଟାମିନ୍ସ, ମିନେରାଲସ୍ ଓ କାର୍ବୋହାଇଡ୍ରେଟସ୍ ଭଳି ପ୍ରାକୃତିକ ପରିପୁଷ୍ଟି ଉପାଦାନରେ ଭରପୁର। ତେଣୁ ବର୍ତ୍ତମାନ, ଅତିରିକ୍ତ କ୍ୟାଲସିୟମ ଅର୍ଥ, ଅଧିକ ଉତ୍ତମ ସ୍ୱାସ୍ଥ୍ୟ।

**ପୁଷ୍ଟି ଯୋଗାଇବାରେ ଅତୁଳନୀୟ**




HTA-6037 ORI



# ଜହ୍ନମାମୁଁ

ସେପ୍ଟେମ୍ବର ୧୯୮୮



## ବିଷୟ-ସୂଚୀ


ସମ୍ପାଦକୀୟ ... ୭
ଜହ୍ନମାମୁଁ ସମ୍ବାଦ-ବିଚିତ୍ରା ... ୯
ସତ୍ୟ ଅସତ୍ୟ ... ୧୦
ତୁର ପରବତ ... ୧୧
ବୋଝ ... ୧୭
କନକ ଉପତ୍ୟକାର କାହାଣୀ ... ୧୯
ଅରଣ୍ୟରେ ରାଜକନ୍ୟା ... ୨୭
ଉପଯୋଗିତା ... ୩୪
ମୁଦ୍ରା ରାକ୍ଷସ ... ୩୫
ଅସଲ୍ ଜହରାଜ ... ୩୯
କୃଷ୍ଣାବତାର ... ୪୩
ଠକ ଜ୍ୟୋତିଷ ... ୫୧
ସେନାପତି ନିର୍ବାଚନ ... ୫୭
ଭଗବାନ ସାକ୍ଷୀ ... ୫୯
ପ୍ରକୃତିର ବିସ୍ମୟ! .. ୬୩
ଫଟୋ-ପରିଚୟ-ପ୍ରତିଯୋଗିତା ... ୬୫





ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦




## ମଉଜ-ମଜଲିସ୍‌ର ଦୁନିଆରେ ମିଶନ୍ତୁ—ମ୍ୟାଗୀ କ୍ଲବର ସଦସ୍ୟ ହୁଅନ୍ତୁ !

କ୍ଲବେ ସଦସ୍ୟ ହେବା ଲାଗି, ୫ ଟି ଖାଲି ମ୍ୟାଗୀ ନୁଡଲସ୍ ପ୍ୟାକ୍ ର ଆଗ ପଟରେ ଯେଉଁଠି 'Maggi 2-Minute Noodles' ଟୋକି ନାମ ଲେଖା ହୋଇଛି ସେହି ଅଂଶକୁ ହିଁ କାଟି ଆମ ପାଖକୁ ପଠାନ୍ତୁ । ଆପଣଙ୍କୁ ଆଜୀବନ ସଦସ୍ୟ କରିବା ପାଇଁ ସୁପର ମ୍ୟାଗୀ ସଦସ୍ୟ ପଦର ଏକ ବ୍ୟାଜ୍ ଓ ସଦସ୍ୟ ରେଜିଷ୍ଟ୍ରି ହେବାର ଏକ ପ୍ରମାଣପତ୍ର ଆମେ ଆପଣଙ୍କ ପାଖକୁ ପଠାଇବୁ । ଏହାଛଡ଼ା ଏହିସବୁ ଉପହାର ମଧ୍ୟରୁ ଯେକୌଣସି ଗୋଟିଏକୁ ବାଛିବା ଲାଗି ସୁଯୋଗ ମଧ୍ୟ ମିଳିବ—

- ମ୍ୟାଗୀ ବୁକ୍ ଅଫ୍ ଫନ୍ ସେଟ୍ (ଏକ ସମସ୍ୟା-ସାରଣୀ ଓ ୨୦ ଟି ପୁସ୍ତକ ନେଇକି)
- ମ୍ୟାଗୀ ଟ୍ରାଫିକ୍ ଗେମ୍ (ଟ୍ରାଫିକ ଖେଳ) * ବ୍ରେନର୍ ପଜ୍ଲ (ଭଙ୍ଗା ଗୋଳକଧନ୍ଦା)
- ମ୍ୟାଗୀ ପୋଷ୍ଟର ସେଟ୍ • ଉନନ ଟ୍ରେ ଗେମ୍ (ପ୍ରତ୍ୟେକ ଥର ନୂତନ ଫଳାଫଳ ମିଳିବ)

ଯଦି ଆପଣ ଚାହାନ୍ତି, ପ୍ରତ୍ୟେକ ଉପହାର ପାଇଁ ୫ଟି ଖାଲି ଖୋଳକୁ ପଠାଇ ଏହି ସବୁ ୫ଟି ଯାକ ଉପହାରକୁ ଏକ ମିଆଦ ମଧ୍ୟରେ ସଂଗ୍ରହ କରି ପାରନ୍ତି । ଖାଲି ତ'ଣ ଏତିକି, ଭବିଷ୍ୟତରେ ମ୍ୟାଗୀ କ୍ଲବରେ ଅନେକ ଚମତ୍କାର ଘଟଣା ଘଟିବ । ଶୀଘ୍ର ଆଜିହିଁ ସଦସ୍ୟ ହୁଅନ୍ତୁ !




**ଏହା ଗୁରୁତ୍ୱପୂର୍ଣ୍ଣ !**

କାଟି ରଖିଥିବା ନାମଗୁଡ଼ିକୁ ୨୦-ପଇସିଆ ଟିକଟ ଲଗାଇ ଲଫାପାରେ ପୂରାନ୍ତୁ ଓ ଏହାସହ ନିମ୍ନଲିଖିତ ବିବରଣୀ ସ୍ପଷ୍ଟରେ ଲେଖନ୍ତୁ ।

ନାମ : ପୂରା ଠିକଣା : ବୟସ : ବାଳକ/ବାଳିକା

ଯେତୋଟି କଣା ଅଂଶ ଲଫାପାରେ ପୂରାଇଥିବେ ସେଗୁଡ଼ିକର ସଂଖ୍ୟା,

ଆପଣ ଯେଉଁ ଉପହାର ଚାହାନ୍ତି ତାର ନାମ

ଆପଣଙ୍କ ପତ୍ର ଆମ ପାଖକୁ ଏହି ଠିକଣାରେ ପଠାନ୍ତୁ—

ଦ ମ୍ୟାଗୀ କ୍ଲବ, ପୋଷ୍ଟ ବକ୍ସ ନମ୍ବର-୫୬୩, ନୂଆ ଦିଲ୍ଲୀ-୧୧୦୦୫୫




HTA 6026




# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ଜନକ ଉପତ୍ୟକାର ନଗେଶ ରାଜା! ଏକ ଦିଗରେ ଲଡୁର ଲୋଭରେ ଆତୁର, ଅନ୍ୟ ଦିଗରେ ସୁବର୍ଣ୍ଣପ୍ରତିମା ଦିନେ ଜୀବନ୍ୟାସ ପାଇବ ଓ ସେହି ସୁନ୍ଦରୀ ପରୀକନ୍ୟାକୁ ସେ ବିଭା ହେବ, ସେ ସ୍ୱପ୍ନରେ ବିଭୋର ହୋଇ ରହିଥାଏ! ଏ ଦୁର୍ବଳତାର ସୁଯୋଗ ନେଉଛି ଦୁଷ୍ଟ ଯାଦୁକର। ରାଜାର ଦୁର୍ଦ୍ଦଶା, ଲୋଭ ଓ ଅଜ୍ଞାନର ପରିଣତି।

## ଅମରବାଣୀ

ଯଦ୍ୟଦାଚରତି ଶ୍ରେଷ୍ଠଃ, ତତ୍ତଦେବେତରୋ ଜନଃ ।
ସ ଯତ୍ ପ୍ରମାଣଂ କୁରୁତେ, ଲୋକସ୍ତଦନୁବର୍ତ୍ତତେ ॥

[ମହତ୍ ଲୋକମାନଙ୍କ କାର୍ଯ୍ୟକୁହିଁ ସାଧାରଣ ଲୋକେ ଅନୁସରଣ କରନ୍ତି। ମହାନ୍ ଲୋକଙ୍କ ସ୍ୱୀକୃତ ପନ୍ଥା ଅନୁସରଣ କରିହିଁ ଏ ବିଶ୍ୱ ଚାଲିଛି।]

ବର୍ଷ : ୨୨ ସେପ୍ଟେମ୍ବର ୧୯୮୮ ଅଙ୍କ : ୩

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

# ଆପଣଙ୍କ ଶିଶୁକୁ ଦିଅନ୍ତୁ
# ସେରେଲାକ୍‌ର ଅଦ୍ୱିତୀୟ ଲାଭ



## ପ୍ରଥମ ବହଳିଆ ଘନ ଆହାର ରୂପେ ।

ଆପଣଙ୍କ ଶିଶୁଟି ପ୍ରାୟ ୪ ମାସର ହୋଇଗଲେ, ତାଁ ପାଇଁ ଦରକାର ହୁଏ, ଦୁଧ ସଙ୍ଗେ ସଙ୍ଗେ ବହଳିଆ ଘନ ଆହାର। ତାଙ୍କୁ ଦିଅନ୍ତୁ ସେରେଲାକ୍‌ର ଅଦ୍ୱିତୀୟ ଲାଭ।

**ପୁଷ୍ଟି ସାଧନର ଲାଭ :** ସେରେଲାକ୍‌ର ପ୍ରତ୍ୟେକ ଆହାର, ଆପଣଙ୍କ ଶିଶୁ ଦରକାର କରୁଥିବା ସମସ୍ତ ପୁଷ୍ଟିକାରୀ ଗୁଣ ଯୋଗାଇଥାଏ ; ଯଥା :— ସ୍ନେହସାର, ଶ୍ୱେତସାର, ଫ୍ୟାଟ୍, ଭିଟାମିନସ୍ ତଥା ଖଣିଜସାର। ଏଥିରେ ସବୁ କିଛି ସୁଷମଭାବେ ତଥା ସଠିକ୍ ଆକାରରେ ରହିଛି।

**ଆସ୍ୱାଦ ଲାଭ :** ସେରେଲାକ୍‌ର ଅପୂର୍ବ ସ୍ୱାଦ ଶିଶୁମାନଙ୍କୁ ବହୁତ ଭଲ ଲାଗେ।

**ସମୟ ବଞ୍ଚେଇବାର ଲାଭ :** ସେରେଲାକ୍ ଆଗରୁ ପାକକରା ହୋଇଛି ଏବଂ ଏଥିରେ ଦୁଧ ଓ ଚିନି ମହଯୁତ ରହିଛି। ଏହାକୁ କେବଳ ଆଗରୁ ଫୁଟାଯାଇଥିବା ଉଷୁମ ପାଣିରେ ମିଶାନ୍ତୁ।

**ପସନ୍ଦ ଲାଭ :** ପସନ୍ଦ ପାଇଁ ତିନି ପ୍ରକାର ସେରେଲାକ୍ ରହିଛି।

ଦୟାକରି ଡବାଉପରେ ଲେଖାଥିବା ନିର୍ଦ୍ଦେଶାବଳୀକୁ ଯତ୍ନ ସହକାରେ ପାଳନ କରନ୍ତୁ। ଯାହା ଫଳରେକି ଏହି ଶିଶୁ ଖାଦ୍ୟ ପ୍ରସ୍ତୁତ କରିବାର ଶୁଦ୍ଧତା ରହିବ, ଏବଂ ଆପଣଙ୍କ ଶିଶୁଙ୍କୁ ମିଳିବ, — ସ୍ୱାସ୍ଥ୍ୟ ଓ ସୁଷମ ପୁଷ୍ଟିକର ଆହାର।




୬ ମାସରୁ




୪ ମାସରୁ




୬ ମାସରୁ

**ମାଗଣାରେ**
**ସେରେଲାକ୍ ବେବୀ କ୍ୟାର୍ ବୁକ୍ ପାଇଁ**
**ଏହି ଠିକଣାରେ ଚିଠି ଲେଖନ୍ତୁ :**
ସେରେଲାକ୍ ପୋଷ୍ଟ ବକ୍ସ ନ : ୩
ନୂଆଦିଲ୍ଲୀ — ୧୧୦୦୦୮




## ସେରେଲାକର ପ୍ରତିଶ୍ରୁତି : ସ୍ୱାଦ ଯୁକ୍ତ-ସମ୍ପୂର୍ଣ୍ଣ ପୁଷ୍ଟି ସାଧନ ।

## ଜହ୍ନମାମୁଁ ସମ୍ବାଦ-ଘଟଣା

### ବୃହତ୍ତମ ସମୁଦ୍ର-ବିହଙ୍ଗ




ପକ୍ଷର ଦୈର୍ଘ୍ୟ ଅଠର ଫୁଟ । ଓଜନ ୯୦ ପାଉଣ୍ଡ । ଏଭଳି ବିଶାଳ ପକ୍ଷୀମାନେ ଏକଦା ସମୁଦ୍ର ଉପରେ ଓ ଉପକୂଳ-ବର୍ତ୍ତୀ ଅଞ୍ଚଳରେ ଉଡ଼ି ବୁଲୁଥିଲେ ପ୍ରାୟ ପଚିଶ ଲକ୍ଷ ବର୍ଷ ତଳେ । ତେବେ ଆମେରିକାରେ ସେ ଯୁଗର ଏ ପକ୍ଷୀର ଫସିଲ୍ ଏବେ ମିଳିଛି । ବର୍ତ୍ତମାନ ଦେଖାଯାଉଥିବା ସମୁଦ୍ର-ବିହଙ୍ଗମାନଙ୍କ ଭିତରେ ସବୁଠୁ ବଡ଼ ହେଲା ୨୦ ପାଉଣ୍ଡ୍ ଓଜନ ବିଶିଷ୍ଟ ଆଲ୍‌ବାଟ୍ରସ୍ ।

### ଘୁଡ଼ି ନେଇଗଲା ଉଡ଼ାଇ !



କାଲିଫର୍ଣ୍ଣିଆର ଗୋଟାଏ ପ୍ରମୋଦ ଉଦ୍ୟାନରେ ଆଠବର୍ଷ ବୟସ୍କା ଦାନ୍ତା ଘୁଡ଼ି ଉଡ଼ାଉଥିଲା । ବାପା ମା ଘାସ ଉପରେ ବସିଥିଲେ । ହଠାତ୍ ସେମାନେ ଦେଖିଲେ, ଝିଅଟି ଉଡ଼ି ଯାଉଛି । କଥା କ'ଣ କି, ଗୋଟାଏ ଜେଟ୍ ବିମାନ ଅବତରଣ କରୁଥିଲା । ଘୁଡ଼ିର ନାଇଲନ୍ ସୂତା ସେଥିରେ ଲାଗିଗଲା । ଝିଅ ଉପରକୁ ଉଠିଗଲା । ତେବେ କିଛି ଦୂର ପରେ ଝିଅ ସୂତା ଉପରୁ ହାତ ମୁଠା ଶିଥିଳ କରି ତଳେ ପଡ଼ିଲା । ନା, ଜଖମ୍ ହୋଇ ନାହିଁ ।



### ରକ୍ତ-ହୀରା

ଓ୍ୱାଶିଂଟନ୍ ଯାଦୁଘରେ ପହଞ୍ଚିଲା ଗୋଟାଏ ସାଧାରଣ ପାର୍ଶଲ୍ । ଖୋଲି ଦେଖିବା ବେଳକୁ କେହିଜଣେ ଗୋଟାଏ ଲାଲ ରଙ୍ଗର ହୀରା ପଠାଇ ଦେଇଛି । ଏହାର ମୂଲ୍ୟ କୋଟି କୋଟି ଟଙ୍କା । ପୃଥିବୀରେ ମାତ୍ର ଗୁଟିଗୋଟି ଲାଲ୍ ହୀରା ଥିବାର ଜଣାଯାଏ ।

### କେବଳ ମହିଳାଙ୍କ ଥାନା !



ପୁରୁଷମାନେ ଅଭିଯୋଗ ଉପସ୍ଥାପନା ପାଇଁ ସେଠାକୁ ଯାଇପାରିବେ । କିନ୍ତୁ ଆଲିଗଡ଼ଠିଁ ସେ ଥାନାର ସବୁ କର୍ମଚାରୀ ମହିଳା ।

# ସତ୍ୟ ଅସତ୍ୟ

ଥରେ ପ୍ରହରୀମାନେ ଜଣେ ବିଦେଶୀକୁ ଆଣି ରାଜାଙ୍କ ଆଗରେ ହାଜର କଲେ । ସେ ଚୋରି କରିଥିଲା ।

ସେ ଯୁଗର ନିୟମ ଅନୁସାରେ ରାଜା କହିଲେ, "ତାକୁ ପ୍ରାଣଦଣ୍ଡ ଦିଆଯାଉ ।"

ଲୋକଟି କ'ଣ କହିବାର ଶୁଣାଗଲା । କିନ୍ତୁ ତା' ଭାଷା ରାଜା ଜାଣି ନଥିଲେ । ସେ ମନ୍ତ୍ରୀଙ୍କୁ ପଚାରିଲେ, "ସେ କ'ଣ କହୁଛି ଜାଣ ?"

ମନ୍ତ୍ରୀ କହିଲେ, "ହଁ ମହାରାଜ । କହୁଛି, ମୁଁ ଜଣେ ବିଦେଶୀ । ଏ ରାଜ୍ୟର ରୀତି ନିୟମ ଜାଣେ ନା । ଧର୍ମପ୍ରାଣ ରାଜା ମୋତେ ଲଘୁଦଣ୍ଡ ଦେଇ ଛାଡ଼ିଦେବେ ।"

"ବେଶ୍, ଲୋକଟିକୁ ସତର୍କବାଣୀ ଶୁଣାଇ ଛାଡ଼ିଦିଅ ।" ରାଜା କହିଲେ ।

ହଠାତ୍ ଜଣେ ଅମାତ୍ୟ କହିଲେ, "ମହାରାଜ ! ମୁଁ ସେ ଭାଷାରେ ପଣ୍ଡିତ । ଲୋକଟି ସେଇଆ କହୁନାହିଁ । ପ୍ରକୃତରେ ସେ ଆପଣଙ୍କୁ ଗାଳି ଦେଉଛି ।"

ରାଜା ହସିଲେ ଓ କହିଲେ, "ବାବୁ, ମୁଁ ଜାଣିଥିଲି ଯେ ମନ୍ତ୍ରୀ ମିଛ କହୁଛନ୍ତି । କିନ୍ତୁ ତାଙ୍କ ମିଛ କହିବାର ଉଦ୍ଦେଶ୍ୟ ଜଣଙ୍କର ପ୍ରାଣ ବଞ୍ଚାଇବା । ତମେ ସତ କହୁଛ । କିନ୍ତୁ ତମ ସତ୍ୟର ଉଦ୍ଦେଶ୍ୟ ଜଣକୁ ମୃତ୍ୟୁଦଣ୍ଡ ଦେବା । ଅତଏବ ମୁଁ ମନ୍ତ୍ରୀଙ୍କ ବ୍ୟାଖ୍ୟାକୁହିଁ ଗ୍ରହଣ କଲି ।"





# ଦୂର ପରବତ

ମହେନ୍ଦ୍ରପୁରର ତରୁଣ ରାଜା ଯେପରି ବୁଦ୍ଧିମାନ ସେହିପରି ସହାନୁଭୂତିଶୀଳ ଥିଲେ । ଯେତେବେଳେ ତାଙ୍କ ବିବାହ ପାଇଁ ନାନା ଆଡ଼ୁ ପ୍ରସ୍ତାବ ସବୁ ଆସିଲା, ସେତେବେଳେ ସେ ଜଣାଇଦେଲେ କି ସେ କୌଣସି ରାଜପରିବାରରେ ଯେ ବିବାହ କରିବେ, ଏଭଳି କଥା ନାହିଁ । ଯେ କୌଣସି ସାଧାରଣ ଘରର ଝିଅ ପସନ୍ଦ ହେଲେ ସେ ବିଭା ହେବାକୁ ପ୍ରସ୍ତୁତ ।

ଏକଥା ଚାରିଆଡ଼େ ଅଧିକ ମାତ୍ରାରେ ପ୍ରଚାର ହୋଇଗଲା ।

ଦିନେ ରାଜା ଓ ମନ୍ତ୍ରୀ ସେମାନଙ୍କ ଅଭ୍ୟାସ ଅନୁସାରେ ଛଦ୍ମବେଶ ପକାଇ ରାଜ୍ୟ ବୁଲି ବାହାରିଥାନ୍ତି । ରାତି ଭୋର ହୋଇ ଆସୁଥାଏ । ଗୋଟିଏ ପ୍ରାନ୍ତର ଭିତରେ ସେମାନେ ଜଣେ ଯୁବକ ଗୋଟିଏ ଗଛ ଚଢ଼ିବାର ଦେଖିଲେ । ଏତେ ସକାଳେ ଯୁବକଟି ଗଛ ଚଢ଼ିଲା କାହିଁକି ? ସେ ଗଛରେ ଫଳ ନାହିଁ କି ଫୁଲ ନାହିଁ । ରାଜା ମନ୍ତ୍ରୀ ତରବରରେ ସେ ଗଛଆଡ଼େ ଚାଲିଲେ । ଯୁବକଟି ପ୍ରଥମେ ଦେହଛପା ଦେବାର ଚେଷ୍ଟା କଲା । କିନ୍ତୁ ପାରିଲା ନାହିଁ । ରାଜା ଓ ମନ୍ତ୍ରୀ ଗଛ ପାଖରେ ପହଞ୍ଚି ଯୁବକକୁ ତଳକୁ ଓହ୍ଲାଇ ଆସିବା ପାଇଁ ଇଙ୍ଗିତ କଲେ । ମୁହଁରେ ଅଧା ଭୟ ଓ ଅଧା ଦୁଃଖ ମିଶା ଭାବ; ନିରୁପାୟ ହୋଇ ଯୁବକଟି ତଳକୁ ଓହ୍ଲାଇଲା । ଖଣ୍ଡିଏ ଦଉଡ଼ି ମଧ୍ୟ ଟଙ୍କ୍ରିକରି ଗଛର ଡାଳରେ ବାନ୍ଧିଛି । ଜଣାଗଲା ଜୀବନରେ କୌଣସି ଗଭୀର ଦୁଃଖ ପାଇ ଯୁବକଟି ଆତ୍ମହତ୍ୟା କରିବାକୁ ଯାଉଥିଲା । ଏ ଘଟଣା ଦେଖି ରାଜାଙ୍କର ମନରେ କୌତୁହଳ ହେଲା ଯୁବକର ଦୁଃଖ କ'ଣ ଜାଣିବା ପାଇଁ । ହୁଏତ ସେ ମଧ୍ୟ କିଛି ପ୍ରତିକାର କରିପାରନ୍ତି ।

ସେ ପଚାରିଲେ, "ଆଚ୍ଛା, ତମେ ଜଣେ ଯୁବକ, ଜାଣି ଜାଣି ଏ ଭଦ୍ରଙ୍କର ଘାତ କାହିଁକି କରିବାକୁ ଯାଉଥିଲ କେଉଁ ଦୁଃଖରେ ? କ'ଣ ବା ସେ ଦୁଃଖର କାରଣ ? କିଏ ବା ସେ ଦୁଃଖ ତୁମକୁ ଦେଇଛି ? କୁହ, ମନରେ କୌଣସି ସଙ୍କୋଚ ନକରି କୁହ । ହୁଏତ ଆମେ ତୁମ ପାଇଁ କିଛି ପ୍ରତିକାର କରିପାରିବୁ ।"

"ମୋର ଜୀବନର ସମସ୍ତ ଦୁଃଖ ପାଇଁ ଦାୟୀ ଏ ଦେଶର ରାଜା ।" ଯୁବକଟି ନିଃସଙ୍କୋଚରେ କହିଲା ।

"ଏ ଦେଶର ରାଜା ? ଅସମ୍ଭବ । ତୁମ ସହିତ ତାଙ୍କର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ଅଛି କି ?" ରାଜା ପଚାରିଲେ ।

"ନା, ତେବେ ପରୋକ୍ଷ ଭାବରେ ସେହି ମୋର ଏହି ଅବସ୍ଥା ପାଇଁ ଦାୟୀ ।" ଯୁବକଟି କହିଲା ।

ବିସ୍ମୟାଭିଭୂତ ରାଜା କହିଲେ, "କିପରି ଏହା ସମ୍ଭବ ? ତୁମେ ବୁଝାଇ କୁହ । ରାଜା ଓ ମନ୍ତ୍ରୀ ଶୁଣୁଥା'ନ୍ତି । ଯୁବକଟି ତା'ର ଜୀବନକାହାଣୀ ତାଙ୍କୁ ଶୁଣାଇବାକୁ ଆରମ୍ଭ କଲା ।

ତାହାର ଉଦ୍ଦେଶ୍ୟ କ'ଣ ? ଯୁବକ ସେମାନଙ୍କୁ ମିଛ କହି ପାରିଲା ନାହିଁ । ତା'ର ନାମ ସୁବଳ । ସେ ସୁଲୁମାଣି ନାମକ ଗୋଟିଏ ଝିଅକୁ ବିଭା ହେବାକୁ ଚାହୁଁଥିଲା । କିନ୍ତୁ ସୁଲୁମାଣି ଢରେ ଅଡ଼ି ବସିଛି କି ସେ ରାଜାଙ୍କୁ ବିଭା ହେବ ! ରାଜା ତ ସାଧାରଣ ଘରର



ଝିଅକୁ ବାହା ହେବାକୁ ଗଲ, ଅତଏବ ତାକୁ ବାହା ନହେବେ କିଆଁ ?

"ତମେ ସୁକୁମାରୀକୁ ତମ କଥା କହିଛ କି ?" ରାଜା ପଚାରିଲେ ।

"କହି ଲାଭ ନାହିଁ ।" ସୁବଳ ଉତ୍ତର ଦେଲା ।

"ହେଲା ବାବୁ, ତମେ ଏମିତ ଅଧୈର୍ଯ୍ୟ ହୁଅ ନାହିଁ । ଥରେ ଆତ୍ମହତ୍ୟା କଲେ ସାତ ଜନ୍ମ କାଳ ତମକୁ ସମାନ କଷ୍ଟ ଭୋଗିବାକୁ ହେବ । ଏହା ତୁମେ ଜାଣିନାହଁ । ଧୈର୍ଯ୍ୟ ଧର । ଆମେ ତମ କଥା ନିଷ୍ଚୟ ବୁଝିବା ।" ଛଦ୍ମବେଶୀ ରାଜା ଓ ମନ୍ତ୍ରୀ ଯୁବକକୁ ଆଶ୍ୱାସନା ଦେଇ ତାକୁ ତା' ଘରକୁ ପଠାଇ ଦେଲେ ।

ତା'ପରେ ସେମାନେ ସୁବଳ ଓ ସୁକୁମାରୀର ଗାଁ ଆଡ଼େ ଚାଲିଲେ । ଗାଁ ଭିତରେ ପଶିବା ବେଳକୁ କୂଅ ପାଖରେ ସେମାନେ ଅନେକ ଲୋକ ଜମା ହୋଇଥିବାର ଦେଖିଲେ । ସେମାନଙ୍କ ଭିତରେ ଚାଞ୍ଚଲ୍ୟ ଖେଳି ଯାଇଥାଏ । କଥା କ'ଣ ? ସୁକୁମାରୀ ରାଜାଙ୍କୁ ବାହା ହେବ ବୋଲି ଜିଗର ଲଗାଇଥାଏ । ତା' ବାପା ତାକୁ ପାଗଳାମି କହିବାରୁ ସେ କୂଅକୁ ଡେଇଁ ପଡୁଥିଲା, ଦୈବାତ୍ ଗାଁ ଚୌକିଦାର ଦୌଡ଼-ଆସି ତାକୁ ଟାଣି ଧରି ରକ୍ଷା କଲା । ଛଦ୍ମବେଶୀ ରାଜା ଓ ମନ୍ତ୍ରୀ, ଝିଅକୁ କହିଲେ କି ସେମାନେ ରାଜାଙ୍କ ସହ କଥାବାର୍ତ୍ତା କରିବେ । ରାଜା ପାଖ ବଣକୁ ଶୀକାର ପାଇଁ ଆସିଛନ୍ତି । ସୁକୁମାରୀ ଆଶ୍ୱସ୍ତ ହେଲା ।





ରାଜା ମନ୍ତ୍ରୀ ଚାଲିଗଲେ । ଏହାର ଦୁଇଘଣ୍ଟା ପରେ ଦୁଇଜଣ ପ୍ରହରୀ ଆସି ସୁକୁମାରୀ ବାପାକୁ କହିଲେ, "ରାଜା ଶୀକାର ପାଇଁ ବଣରେ ଦୌଡୁଥିବା ବେଳେ ପଡିଗଲେ । ବେକରେ ରକଜା ରହିଯାଇଛି । ସେ କାହାର ଘରେ ବିଶ୍ରାମ ନେବେ । ଏ ଗାଁରେ ସବୁଠାରୁ ପ୍ରଶସ୍ତ ଓ ଉତ୍ତମ ଘର କାହାର ଅଛି ?"

ସୁକୁମାରୀ ବାହାରି ଆସି ଆନନ୍ଦ ଓ ଉତ୍କଣ୍ଠା ସହକାରେ କହିଲା, "ଆମର ଘରହିଁ ସବୁଠାରୁ ପ୍ରଶସ୍ତ ଓ ଉତ୍ତମ । ରାଜାଙ୍କୁ ଏହିଠାକୁ ନେଇଆସ ।"

ପ୍ରହରୀ ଦୁଇଜଣ ଚାଲିଗଲେ । ରାଜା ଆସି ପହଞ୍ଚିଲେ । ତାଙ୍କୁ ଚାରି ପାଞ୍ଚଜଣ ଧରାଧରି କରି ଶୁଆଇ ଦେଲେ । ରୁକ୍ଷ ସ୍ୱରରେ ରାଜା କହିଲେ, "ଏଇଟା ଘର ନା ମଶାଣି ?" ତାଙ୍କ କଥା ଶୁଣି ସୁକୁମାରୀର ମୁହଁ ଫିକା ପଡ଼ିଗଲା । ଯାହାହେଉ, ସେ ତାଙ୍କ ସେବାରେ ମନ ଦେଲା ।

ସନ୍ଧ୍ୟା ବେଳକୁ ରାଜା ତାଙ୍କର ଜଣେ ପାଖ ଲୋକଙ୍କୁ କହିଲେ, "ଆଣ ମଦ !"

ସୁକୁମାରୀ କହିଲା, "ମଣିମା ! ଆପଣ ଅସୁସ୍ଥ ଅବସ୍ଥାରେ ମଦ ପିଇବେ ?"

"ଚୁପ ଝିଅ, ଚୁପ୍ ! ତୋତେ ବି ପିଆଇବି । ତୁ ନାଚ ଜାଣୁ?" ରାଜା ପଚାରିଲେ ।

"ନା, ମଣିମା!"

ରାଜା ମଦ ପିଇ ମାତାଲ ହେବା ଭଙ୍ଗୀରେ କହିଲେ, "ନାଚ କହୁଛି, ନହେଲେ ଚାବୁକରେ ପିଟି ପିଟି ଛାଲ ଉତାରି ଦେବି ।"

ସୁକୁମାରୀ ଡ଼ରିଯାଇ ସେ କୋଠରୀରୁ ପଳାଇ ଗଲା । ରାଜା ଏହା ପରେ ଜୁଆଖେଳରେ ମନ ଦେଲେ ଓ ଭୀଷଣ ଚିତ୍କାର କଲେ । ତା'ପରେ ମନ୍ତ୍ରୀଙ୍କୁ କହିଲେ, "ରାଜ୍ୟରୁ ଅଧା ବନ୍ଧକ ଦିଅ । ମୁଁ ବଡ଼ ସହରକୁ ଯାଇ ଅନ୍ୟ ରାଜାମାନଙ୍କ ସହ ଜୁଆ ଖେଳିବି ।"

ସୁକୁମାରୀ ଏହା ଶୁଣିଲା । ତେଣିକି ସେ ଆଉ ରାଜାଙ୍କ ଆଗକୁ ବାହାରିଲା ନାହିଁ ।

ଦ୍ୱିତୀୟ ଦିନ ହଠାତ୍ ରାଜା ଘର ପଛପଟ କୂଅ ପାଖକୁ ଯାଇ ସେଠାରେ

ସୁକୁମାରୀକୁ ଦେଖି ପଚାରିଲେ, "ହଇରେ ଝିଅ! ତୁ ଦେଖିବାକୁ ମନ୍ଦ ନୋହୁ। ମୋତେ ବାହା ହେବୁ?"

"ମଣିମା! ମୁଁ ଆପଣଙ୍କ ଯୋଗ୍ୟ ନୁହେଁ। ଆପଣଙ୍କୁ ମୋଠୁଁ ବହୁତ ଅଧିକ ସୁନ୍ଦରୀ କନ୍ୟା ମିଳିବେ।" ସୁକୁମାରୀ କହିଦେଇ ଚାଲିଗଲା।

ରାଜା ମନେ ମନେ ହସିଲେ ଓ ନିଜକୁ କହିଲେ, "ଝିଅଟି କହୁଛି କି ମୁଁ ତା'ର ଯୋଗ୍ୟ ନୁହେଁ! ବାସ୍। ଉଦ୍ଦେଶ୍ୟ ସଫଳ ହେଲା।"

ରାଜା ଚାଲିଗଲେ। ଦୁଇ ଚାରିଦିନ ପରେ ସୁବଳ ସିଧାସଳଖ ଯାଇ ସୁକୁମାରୀକୁ ନିଜ ମନ କଥା କହିଲା। ସୁକୁମାରୀ ସମ୍ମତ ହେଲା ଓ ଉଭୟେ ବିଭା ହେଲେ।

"ମହାରାଜ! ଆପଣ ଯେଉଁ ଅଭିନୟ କଲେ, ତାହା ତ ମିଥ୍ୟାଚାର ହେଲା!" ମଂତ୍ରୀ କହିଲେ।

"ମଂତ୍ରୀବର! ଏହାକୁ ଜମା ମିଥ୍ୟାଚାର କହିହେବ ନାହିଁ। ସୁକୁମାରୀ ବ୍ୟକ୍ତିଗତ ଭାବରେ ମୋତେ ଜାଣି ନଥିଲା। ତେବେ ସେ କାହାକୁ ବାହା ହେବାକୁ ଆଗ୍ରହୀ ଥିଲା? ରାଜପଦକୁ ନା ମୋ ରାଜ୍ୟକୁ? ମୁଁ ମଦଖାଏ ନାହିଁ ବା ଜୁଆ ଖେଳେ ନାହିଁ। କିନ୍ତୁ ମୁଁ ମଦ ଖାଇବା ବା ଜୁଆ ଖେଳିବା ଅସମ୍ଭବ ବୋଲି କେହି କହିପାରିବ କି? ମୁଁ ଭଲ ହେବା ଯେତିକି ସମ୍ଭବ, ଖରାପ ହେବା ସେତିକି ସମ୍ଭବ। ସେ ତ କିଛି ନଜାଣି ବାହା ହେବାକୁ ନିଷ୍ପତ୍ତି କରିଥିଲା, ପୁଣି ବାହା ନ ହୋଇ ପାରିଲେ ଆତ୍ମହତ୍ୟା କରିବାକୁ ବସିଥିଲା। ଏହା ତୁଚ୍ଛା ଭାବପ୍ରବଣତା ନୁହେଁ ତ ଆଉ କ'ଣ ହୋଇପାରେ? ତା' ଭାବପ୍ରବଣତା ଓ ଜିଦକୁ ପ୍ରେମ କହିହେବ ନାହିଁ।" ରାଜା କହିଲେ।

"ଠିକ୍ କଥା ଆଜ୍ଞା।" ମଂତ୍ରୀ ରାଜାଙ୍କ କଥାକୁ ସମର୍ଥନ କଲେ।





# ବୋଝ

ଶ୍ୟାମ ଶାସ୍ତ୍ରୀ ଥିଲେ ଜଣେ ସଚ୍ଚା ପଣ୍ଡିତ । ସେ ବହୁକାଳ ଧରି ନାନା ଶାସ୍ତ୍ର ଅଧ୍ୟୟନ କଲେ । ଲୋକେ ଧର୍ମ ନାମରେ କାହିଁକି ପରସ୍ପର କନ୍ଦଳ କରନ୍ତି, ସେ ଏଇକଥା ବୁଝିବାକୁ ଚାହୁଁଥିଲେ । ସେ ଦେଖିଲେ ହିନ୍ଦୁ ଧର୍ମଶାସ୍ତ୍ରର ପ୍ରଧାନ ସତ୍ୟ ହେଲା, ଧର୍ମ ମଣିଷ ସହ ଭଗବାନଙ୍କର ସମ୍ପର୍କ ସ୍ଥାପନ କରିବା ପାଇଁ ଉଦ୍ଦିଷ୍ଟ । ମଣିଷ ମଣିଷ ଭିତରେ ଝଗଡ଼ା ଉପୁଜାଇବା ଧର୍ମଶାସ୍ତ୍ରର ଉଦ୍ଦେଶ୍ୟ ନୁହେଁ ।

ଶ୍ୟାମ ଶାସ୍ତ୍ରୀ ଭାବିଲେ, ହୁଏତ ଅନ୍ୟାନ୍ୟ ଧର୍ମଶାସ୍ତ୍ରରେ କନ୍ଦଳ ପାଇଁ ଖୋରାକ ଥିବ । ସେ ସେଉଠୁ ଅନ୍ୟ ଧର୍ମ ସବୁର ମୂଳ ଶାସ୍ତ୍ର ପଢ଼ିବାକୁ ଆରମ୍ଭ କଲେ । ଦେଖିଲେ, ସେସବୁରେ ମଧ୍ୟ ଶାନ୍ତି, ମୈତ୍ରୀ, ଏହିସବୁ ଗୁଣ ଉପରେ ଗୁରୁତ୍ୱ ଦିଆଯାଇଛି ।

ତେବେ ଭିନ୍ନ ଭିନ୍ନ ଧର୍ମର ଲୋକେ କାହିଁକି ମାଡ଼ପିଟ ହୁଅନ୍ତି ? ନିଜ ନିଜର ଅଜ୍ଞତା ଯୋଗୁଁ । ତାଙ୍କର ଏକଥା ହୃଦ୍‌ବୋଧ ହେଲା । ସେ ଭାବିଲେ, ଏ ବିଷୟରେ ଲୋକଙ୍କୁ ବୁଝାଇବା ଆବଶ୍ୟକ । ତଦ୍ୱାରା ସେମାନଙ୍କର ଜ୍ଞାନଚକ୍ଷୁ ଖୋଲିଯିବ । ଧର୍ମର ପ୍ରକୃତ ଅର୍ଥ ବୁଝିପାରିଲେ ହୁଏତ ଧର୍ମନାମରେ ସେମାନେ ଆଉ ମାଡ଼ପିଟ କରିବେ ନାହିଁ ।

ସେ ପ୍ରସ୍ତୁତ ହୋଇ ସବୁ ଧର୍ମଶାସ୍ତ୍ରର ପ୍ରଧାନ ବହିମାନ ଧରି ଦେଶ ବ୍ୟାପି ଗସ୍ତ କରିବାକୁ ବାହାରିଲେ । ବହି ବୋଝ ଧରି ତାଙ୍କ ସାଙ୍ଗରେ ଯିବା ନିମନ୍ତେ ସେ ଜଣେ ଲୋକ ଠିକ୍ କଲେ । ତା' ନାମ ଶେଖର ।

ପ୍ରଥମେ ପଣ୍ଡିତଙ୍କ ସଭାରେ ବିଶେଷ ଲୋକ ହେଉ ନଥାନ୍ତି । କ୍ରମେ ତାଙ୍କ ବକ୍ତୃତାର ଶୈଳୀ ଓ ଧର୍ମଗ୍ରନ୍ଥମାନଙ୍କରୁ ଦୃଷ୍ଟାନ୍ତ

" ବସୁନ୍ଧର "

ଉପସ୍ଥାପନ କରିବାର ପଦ୍ଧତିରେ ଲୋକେ ଏତେ ପ୍ରଭାବିତ ହେଲେ ଯେ ତାଙ୍କ ଖ୍ୟାତି ବ୍ୟାପିଗଲା । ବଡ଼ ବଡ଼ ଅନୁଷ୍ଠାନ ତାଙ୍କୁ ବକ୍ତୃତା ପାଇଁ ନିମଂତ୍ରଣ କଲେ । ସବୁଠାରେ ତାଙ୍କୁ ସମ୍ବର୍ଦ୍ଧନା ଦେବା ସଙ୍ଗେ ସଙ୍ଗେ ନାନା ଭେଟି ଦିଆଗଲା ।

ଦିନେ ଶ୍ୟାମ ଶାସ୍ତ୍ରୀ ଲକ୍ଷ୍ୟ କଲେ, ଶେଖର ବଡ଼ ହାଲିଆ ଦିଶୁଛି । ତା' ସ୍ୱାସ୍ଥ୍ୟ ଯେପରି ଖରାପ ନ ହେବ, ସେପାଇଁ ଶାସ୍ତ୍ରୀ ତାକୁ ଭଲ ଭଲ ଖାଦ୍ୟ ଖୁଆଇଲେ । କିନ୍ତୁ କ୍ରମେ ତା' ସ୍ୱାସ୍ଥ୍ୟ ଯେପରି ଭାଙ୍ଗି ପଡ଼ିବାର ସେ ଲକ୍ଷ୍ୟ କଲେ ।

ଦିନେ ଜମାଲ ଗାଁର ଜମିଦାର ଶେଖ୍ ବଦ୍‌ରୁଦ୍ଦିନ ସାହେବ ଶ୍ୟାମ ଶାସ୍ତ୍ରୀଙ୍କୁ ଏକ ଲକ୍ଷ ଟଙ୍କା ପୁରସ୍କାର ଦେଲେ । ତହିଁ ଆର ସପ୍ତାହରେ ବିଷ୍ଣୁପୁରରେ ରାଜା ପ୍ରତାପସେନ ତାଙ୍କୁ ଦୁଇଲକ୍ଷ ଟଙ୍କା ଦେଲେ ଓ ବିଷ୍ଣୁପୁରରେ ସାତ ଆଠଦିନ ରହିବାକୁ ଅନୁରୋଧ କଲେ ।

ଶ୍ୟାମ ଶାସ୍ତ୍ରୀ ସେହି ସୁଯୋଗରେ ଶେଖରକୁ ରାଜବୈଦ୍ୟଙ୍କ ପାଖକୁ ନେଇଯାଇ ତାକୁ ଭଲ ଭାବରେ ପରୀକ୍ଷା କରିବାକୁ ବୈଦ୍ୟଙ୍କୁ ଅନୁରୋଧ କଲେ । ତିନିଦିନ କାଳ ପରୀକ୍ଷା କରି ବୈଦ୍ୟ ଜଣାଇଲେ, "ଶେଖରର କୌଣସି ବ୍ୟାଧି ନାହିଁ । ତା'ର ମନରେ କିଛି ବେଦନା ରହିଛି ।"

ଶ୍ୟାମ ଶାସ୍ତ୍ରୀ ଆଶ୍ଚର୍ଯ୍ୟ ହେଲେ । ଶେଖର ଘରୁ ବାହାରିବା ବେଳେ ତାଙ୍କଠାରୁ ବେଶି ଉତ୍ସାହ ଦେଖାଉଥିଲା । ତା' ମାନସିକ



ବେଦନାର କାରଣ କ'ଣ ହେଲା । ସେ ଯେପରି ଘରକୁ ନିୟମିତ ଟଙ୍କା ପଠାଇ ପାରିବ, ଶ୍ୟାମ ଶାସ୍ତ୍ରୀ ସେ ବ୍ୟବସ୍ଥା ବି କରିଦେଇଥିଲେ ।

ସେ ଶେଖରକୁ ଏକାନ୍ତ ପଚାରିଲେ, "ସତ କହିଲ, ତୋର କ'ଣ ହୋଇଛି ?"

ଶେଖର କାନ୍ଦି କାନ୍ଦି ଦେଖାଗଲା ଓ କହିଲା, "ପଣ୍ଡିତେ, ମୁଁ ସତହିଁ କହିବି । ତମେ ଯେଉଁ ବହିରୁ ଜ୍ଞାନ କାଢ଼ି ଲୋକଙ୍କୁ ଦେଉଛ, ସେ ସମୁଦାୟ ବହି ମୁଁ ମୁଣ୍ଡରେ ଧରି ବୁଲୁଛି । ଅଥଚ ଲୋକେ ତମକୁ ସମ୍ବର୍ଦ୍ଧନା ଦେଉଛନ୍ତି, ଫୁଲମାଳ ଦେଉଛନ୍ତି, ଭେଟି ଦେଉଛନ୍ତି, କିନ୍ତୁ ଲୋକେ ମୋତେ ପଚାରୁଛ ନାହାନ୍ତି !"

ଶ୍ୟାମ ଶାସ୍ତ୍ରୀ ରହସ୍ୟ ବୁଝିଲେ । ସେ ପଚାରିଲେ, "ଆଚ୍ଛା ଶେଖର, ଦୈନିକ ତୁ କେତେ ଘଣ୍ଟା ବୋଝ ମୁଣ୍ଡାଇ ବୁଲୁଛୁ ?"

"ଦୁଇ ଘଣ୍ଟା ହାରାହାରି !"

"ବେଶ୍ । ଯଦି କ୍ଳାନ୍ତ ଲାଗେ, ତେବେ କ'ଣ କରୁ ?" ଶାସ୍ତ୍ରୀ ପଚାରିଲେ ।

"ବୋଝ ତଳେ ରଖିଦିଏଁ ।"

"ବେଶ୍ । ତୁ ମୋ ଅବସ୍ଥା ବିଚାର କରିଛୁ ? ମୁଁ ମୋ ମୁଣ୍ଡ ଭିତରେ ସବୁ ଜ୍ଞାନ, ଯୁକ୍ତିତର୍କ ଧରି ବୁଲିଛି । ନିଦରେ ଶୋଇବା ବେଳେ ବି ତାକୁ ଉତାରି ଦେବାର ଉପାୟ ନାହିଁ । କ୍ଳାନ୍ତ ହେଲେ ବି ତାକୁ ତଳେ ଥୋଇ ପାରିବି ନାହିଁ । ତେବେ କଷ୍ଟ କାହାର ?" ଶାସ୍ତ୍ରୀ ପଚାରିଲେ ।

"ସତେ ତ ପଣ୍ଡିତେ ! ମୁଁ ତ ଏକଥା ଭାବି ନଥିଲି !" ଶେଖର କହିଲା ।

ତେଣିକି ଶେଖର ନିଜେ ବୋଝ ତଳେ ରଖିଲା ବେଳେ ମନକୁ ମନ କହେ, "ବିଚରା ପଣ୍ଡିତ ! ସେ କେବେ ବି ବୋଝରୁ ମୁକୁଳି ପାରିବେ ନାହିଁ । ମୋ ବୋଝ ମୁଣ୍ଡ ଉପରେ । ତାଙ୍କର ଭିତରେ !" ଶେଖରର ସ୍ୱାସ୍ଥ୍ୟରେ ବେଶ୍ ଉନ୍ନତି ଦେଖାଗଲା ।





# କନକ ଉପତ୍ୟକାର କାହାଣୀ

[ ୯ ]

[କ୍ରୁର ରାଜା କବଳରୁ ଖସିଯାଇ ସୁବର୍ଣ୍ଣ ପ୍ରତିମାରେ ଜୀବନ୍ୟାସର ରହସ୍ୟ ସନ୍ଧାନରେ ରଜୁ ଏକ ପରେ ଏକ ଅଦ୍ଭୁତ ମୂଲକ ଅତିକ୍ରମ କରୁଥାଏ ଓ ନୂଆ ନୂଆ ଅଭିଜ୍ଞତା ଲାଭ କରୁଥାଏ । ଏଣେ ଅଧୈର୍ଯ୍ୟ ହୋଇ ରାଜା ଜଣେ ଧୂର୍ତ୍ତ ଯାଦୁକର ସାହାଯ୍ୟରେ ପ୍ରତିମାରେ ପ୍ରାଣ ପ୍ରତିଷ୍ଠା ପାଇଁ ଯୋଜନା କରୁଥାନ୍ତି । ତା'ପରେ...]

ରାଜା ପ୍ରଭାତରେ ସମସ୍ତ ମନ୍ତ୍ରୀ ଓ ଅତିଜ୍ଞାନୀ ଅମାତ୍ୟମାନଙ୍କୁ ଡକାଇ ଘୋଷଣା କଲେ, "ତମ ସମସ୍ତଙ୍କୁ ଆମ୍ଭ ସହ ଏକ ସପ୍ତାହ ବ୍ୟାପି ଅନଶନ କରିବାର ସୁଯୋଗ ଆମ୍ଭେ ଦେଲୁଁ ।" ଏ ଘୋଷଣା ପରେ ରାଜା ସେମାନଙ୍କୁ ଆଉ ନିଜ ନିଜ ଘରକୁ ଯିବାକୁ ଦେଲେ ନାହିଁ । ସେ ଖୋଦ ନ ଖାଉଥିବା ବେଳେ ଆଉ କେହି ଲୁଚାଇ କରି କିଛି ଖାଇ ପକାଇବ—ଏକଥା ବା ସେ କିପରି ସହ୍ୟ କରନ୍ତେ !

ବିଶିଷ୍ଟ ଧନକୁ ଅମାତ୍ୟବର୍ଗ କାନ୍ଦିବାକୁ ମନ କରୁଥିଲେ । କିନ୍ତୁ ସେମାନଙ୍କ ପ୍ରିୟ ରାଜା ଯେତେବେଳେ ଏକ ବିଶେଷ ସୌଭାଗ୍ୟର ଅଧିକାରୀ ହେବାକୁ ଯାଉଥିଲେ, ସେତେବେଳେ ସମସ୍ତେ ସରସ ସୁନ୍ଦର ଦେଖା ନ ଯିବେ

ମନୋଜ ଦାସ



କିପରି ? ଅତଏବ ପେଟ ଭୋକ ପେଟରେ ଓ ଆଖିଲୁହ ଆଖିରେ ମାରି ସେମାନେ ହସ ହସ ଦେଖାଯିବାରେ ଏକ ଆରେକୁ ବଳିଗଲେ ।

ରାଜାଙ୍କ ଭୋଜନଶାଳାରେ ରାଜକୀୟ ଆହାର କରୁଥିଲା ଯାଦୁକର । ଯାହା ଉଦ୍‌ବୃତ୍ତ ରହୁଥିଲା, ଚଟାପଟ ତା'ର ସଦ୍‌ବ୍ୟବହାର କରୁଥିଲା ତା'ର ସୁଯୋଗ୍ୟ ସହକାରୀ ।

ତୃତୀୟ ଦିନକୁ ରାଜାଙ୍କର ବାରମ୍ବାର କୋହ ଉଠିବାର ଦେଖାଗଲା । ଚତୁର୍ଥ ଦିନ ସେ କାନ୍ଦିବାକୁ ଆରମ୍ଭ କଲେ । ଅବଶ୍ୟ ସୁବର୍ଣ୍ଣ ପ୍ରତିମା ଜୀବନ୍ୟାସ ପାଇ ସୁନ୍ଦରୀ ପରୀରେ ପରିଣତ ହେବା ପରେ ତାକୁ ବିଭା ହୋଇ ରାଜା କେତେ ସୁଖୀ ହେବେ, ଯାଦୁକର ସେକଥା ମନେ ପକାଇ ଦେଲେ ରାଜାଙ୍କ ମୁହଁରେ ବିଜୁଳି ଭଳି ହସ ଚହଟି ଉଠୁଥିଲା ଓ ସେ ଲୁହ ପୋଛି ପକାଉଥିଲେ । ପର୍ବତ ଭିତରେ ପ୍ରଚୁର ସୁନା ଲୁଚି ରହିଛି ବୋଲି ତାଙ୍କୁ ଜଣାଥିଲା । ପରୀ ତାହା ଠାବ କରିଦେବ, ତାଙ୍କ ହୃଦୟରେ ଏ ବିଶ୍ୱାସ ମଧ୍ୟ ଦୃଢ଼ ହେଉଥିଲା ।

ଏକ ସପ୍ତାହ ଶେଷ ହେଲା । ଅଷ୍ଟମ ଦିନ ପ୍ରତ୍ୟୁଷରେ ରାଜାଙ୍କୁ ଲହୁଣୀ ସ୍ନାନ କରାଇ, ମୂଲ୍ୟବାନ ବସ୍ତ୍ର ପିନ୍ଧାଇ ଦିଆଗଲା ।

"ମଣିମାଙ୍କୁ ବର୍ତ୍ତମାନ ସର୍ବଶେଷ ଅନୁଷ୍ଠାନ ନିମନ୍ତେ ପ୍ରତିମା ପଶ୍ଚାତରେ ଥିବା ଗୁମ୍ଫା ଭିତରକୁ ଯିବାକୁ ହେବ । ସେଇଠି ସେ ତାଙ୍କ ଅନଶନ ଭଙ୍ଗ କରିବେ । ଭଦ୍ରମଣ୍ଡଳି ! ଆପଣମାନେ ନିଜ ନିଜ ଘରକୁ ଯାଇ ଖିଆପିଆରେ ମନୋନିବେଶ କରନ୍ତୁ ।" ମନ୍ତ୍ରୀ ତଥା ଅମାତ୍ୟମାନଙ୍କୁ ଉଦ୍ଦେଶ୍ୟ କରି ଯାଦୁକର କହିଲା । କଣ୍ଠସ୍ୱର ଆହୁରି ଗମ୍ଭୀର କରି ସେ ପୁଣି କହିଲା, "ଗୁଂଫା ଭିତରେ ମୋତେ କେତେକାଳ ଧ୍ୟାନମଗ୍ନ ରହିବାକୁ ପଡ଼ିବ ଜାଣେନା । ରାଜାଙ୍କ ବ୍ୟତୀତ ମୋତେ ଆଉ କେହି ଭେଟି ପାରିବେ ନାହିଁ । କିନ୍ତୁ ଗୋଟାଏ ଚେତାବନୀ ଦେଉଛି ! କେହି ଯେପରି ରାଜାଙ୍କର ଅତି ପାଖକୁ ଲାଗି ନ ଯା'ନ୍ତି ! ମୋ ଯାଦୁ ତାଙ୍କ କଳେବରକୁ ବେଢ଼ି ରହିବ । ଫଳରେ ଯିଏ ତାଙ୍କର ଯେତେ ପାଖକୁ ଯିବ, ସେତିକି ମାତ୍ରାରେ ତା'ର ଆୟୁ ହ୍ରାସ ହେବ ।"

ଯୋଗିଲ୍ ଅମାତ୍ୟବର୍ଗ ଆଉ ଅଧିକ ଚେତାବନୀ ଶୁଣିବା ଭଳି ଅବସ୍ଥାରେ ନଥିଲେ । ଉଠିପଡ଼ି ସେମାନେ ନିଜ ନିଜ ଘରମୁହାଁ ଚାଲିଲେ । ଗୋଟିଏ ରତ୍ନଖଚିତ ଦୋଳିରେ ବସାଇ ଯୋଗିଲ୍ ରଜାଙ୍କୁ ସୁବର୍ଣ୍ଣ ପ୍ରତିମା ପାଖକୁ ନିଆଗଲା ।

"ଆଉ ମାତ୍ର ଦିନଟିଏ ବାକି । ତା'ପରେ ଏ ରାଜ୍ୟ, ପର୍ବତରେ ଲୁକ୍କାୟିତ ସୁନାରାଶିର ସନ୍ଧାନ ସମେତ ଆପଣଙ୍କର ହୋଇଯିବ ।" ଯାଦୁକର ରାଜାଙ୍କ କାନରେ ଚୁପି ଚୁପି କହିଲା । ଉତ୍ସାହିତ ହୋଇ ରାଜା ଆଉ ଶୋଇ ନରହି ଦୋଳି ଉପରେ ଉଠି ବସିଲେ । ତା'ପରେ ଯାଦୁକର କାନ୍ଧରେ ଭରଦେଇ ସେ ଗୁଂଫା ଭିତରେ ପଶିଲେ । ଦେହରକ୍ଷୀମାନଙ୍କୁ ପାହାଡ଼ ତଳକୁ ହଟିଯିବା ନିମନ୍ତେ ନିର୍ଦ୍ଦେଶ ଦେଲା ଯାଦୁକର ।

"ଯାଦୁକର ! ବନ୍ଧୁ ! ମୋତେ ଏତେ ଭୋକ କରୁଛି ଯେ ମୁଁ ଏ ସୁବର୍ଣ୍ଣ ପ୍ରତିମାକୁ ଚୋବାଇ ଖାଇ ଦିଅନ୍ତି । କିନ୍ତୁ ମୁଁ ତ ତାକୁ ବାହା ହେବ !" ରାଜା ସେହି ଭୀଷଣ ଦୁର୍ବଳ ଅବସ୍ଥାରେ ବି ଉତ୍ଫୁଲ୍ଲ ଦିଶୁଥିଲେ ।

ପରିଚାରକମାନେ ରାଜାଙ୍କ ପ୍ରାତଃମଣୋହ୍ନ ସେତେବେଳକୁ ଗୁଂଫା ଭିତରେ ନେଇ ସଜାଇ ରଖି ଆସିଥିଲେ । ପୂର୍ବଦିନ ସନ୍ଧ୍ୟାରେହିଁ ସେ କ'ଣ କ'ଣ ଖାଇବେ, ରାଜା ସେ ଘୋଷଣା କରି ସାରିଥିଲେ । ବିନିଦ୍ର ରଜନୀ ଯାପି ପାଚକଗଣ ସେସବୁ ପ୍ରସ୍ତୁତ କରିଥିଲେ ଓ ରାଜା ରଜନୀ ବ୍ୟାପି ସେସବୁର ସ୍ୱପ୍ନ ଦେଖିଥିଲେ ଏବଂ ରାତି ପାହିଲାଣି କି ନା ଜାଣିବା ପାଇଁ ବାରମ୍ବାର ବାତାୟନ ଦେଇ ବାହାରକୁ ଅନାଇଥିଲେ ।





ଜଳଖିଆ ରାଶିଆଡ଼େ ଅନାଇ ରାଜାଙ୍କ ଆଖିରେ ଆବେଗ ଉଚ୍ଛୁଳି ଉଠିଲା । "ଆଃ, ଆଃ !" ଉଚ୍ଚାରଣ କରି ସେ ଯାଦୁକରକୁ କହିଲେ, "ଏଥର ଖାଇବାକୁ ବସିଲି !"

"ଧୈର୍ଯ୍ୟ ଧରନ୍ତୁ ମହିମା । ସାମାନ୍ୟ ଅନୁଷ୍ଠାନ ବାକି ଅଛି । ଗୁଂଫା କାନ୍ଥରେ ଏହି ଯେଉଁ କଣାଟି ଦେଖୁଛନ୍ତି, ଏଇ ଗୋଟିକ ଭିତରଦେଇ ଆପଣଙ୍କୁ ଗଳିଯିବାକୁ ହେବ । ତା'ପରେ ଖାଲି ସୁଖ, ସୁଖ, ସୁଖ । ଖାଇବେ, ଖୁସି ହେବେ…"

"ଆଉ ପରୀକୁ ବିଭା ହେବି !" ରାଜା ଗଦ୍‌ଗଦ୍ କଣ୍ଠରେ କହିଲେ ।

"ଠିକ୍ । ବର୍ତ୍ତମାନ ବେଶ ଉତାରି ପକାନ୍ତୁ ।"

"ବେଶ ଉତାରିବି କାହିଁକି ?"

"ମହାରାଜ ! ତାହାହିଁ ବିଧି । ଏହା ପରେ ପରେ କ'ଣ ପାଇବାକୁ ଯାଉଛନ୍ତି ସେକଥା ଭୁଲନ୍ତୁ ନାହିଁ । ସେଭଳି ପୁରସ୍କାର ପାଇଁ ସାମାନ୍ୟ ବେଶ କାହିଁକି, ମୁଁ ତ ମୋ ଚମ ଉତାରିବାକୁ ବି ଦ୍ୱିଧା କରନ୍ତି ନାହିଁ ।" ଏହା କହି ଯାଦୁକର ପୋଷାକ ଉତାରିବା ପାଇଁ ରାଜାଙ୍କୁ ସାହାଯ୍ୟ କଲା । ରାଜାଙ୍କ ବହୁମୂଲ୍ୟ ବହିର୍ବାସ ଏବଂ ହୀରାମଣ୍ଡିତ ମୁକୁଟ ଖାଲି ନୁହେଁ, ମୁଦ୍ରିକା ଓ ହାରଟିମାନ ମଧ୍ୟ ବାହାର କରି ନିଆଗଲା । ଅନ୍ଧାରୁଆ ଗୁଂଫା ଭିତରେ ରାଜା ଖାଲି ଅନ୍ତର୍ବାସ ପିନ୍ଧି ଠିଆ ହୋଇଥାନ୍ତି ।

"ଏଥର, ମହାରାଜ, କଣା ଦେଇ ପଶନ୍ତୁ । ମୁଁ ଜାଣେ, ଏହା ଠିକ୍ ରାଜକୀୟ କାମ ନୁହେଁ, କିନ୍ତୁ ପରୀକନ୍ୟା ବିଭା ହେବାକୁ ହେଲେ ଏହା ନକରି ଉପାୟ ନାହିଁ !" ଯାଦୁକର କହିଲା ।

ରାଜା କଣା ଭିତରେ ପଶିବାକୁ ପ୍ରୟାସୀ ହେଲେ ।

ଯାଦୁକର ଓ ତା' ସହକାରୀ ତା'ପରେ କଣା ଭିତରଦେଇ ରାଜାଙ୍କୁ ଠେଲି ଠେଲି ସେପାରି ସୁଡ଼ଙ୍ଗ ଭିତରକୁ ପକାଇଦେଲେ । ସେପଟେ ଦୁମ୍ କିନା ପଡ଼ି ରାଜା ଚିତ୍କାର କଲେ, "ଅନ୍ଧାର ! ଏଠି କଟିକଟି ଅନ୍ଧାର ! ଏଠି ଖାଇବି କିପରି ?"

"ସେ ଚିନ୍ତା ନାହିଁ । ତମକୁ ଅନ୍ଧାରରେ ଖାଇବାକୁ କହିବୁଁ, ସେଭଳି ଅଭଦ୍ର ଆମେ ନୋହୁଁ । ଆମେ ଖାଇ ଦେବୁଁ ।" ଏକଥା

କହିବା ବେଳକୁ ଯାଦୁକର ରାଜାଙ୍କ ପୋଷାକ ଓ ମୁକୁଟ ପିନ୍ଧି ସାରିଥାଏ ।

"ଅନୁଷ୍ଠାନ ଶୀଘ୍ର ଶେଷ କର ।" ରାଜା ବିକଳ କଣ୍ଠରେ କହିଲେ ।

"ଶେଷ ହୋଇଗଲାଣି !" କହି ଯାଦୁକର କଣା ଭିତରଦେଇ ଅନାଇଲା ।

"ତମେ କିଏ ?" ବିସ୍ମିତ କଣ୍ଠରେ ଅନ୍ଧାର ଭିତରୁ ରାଜା ପଚାରିଲେ ।

"କିଏ ମାନେ ? ମୁଁ ରାଜା !" ଯାଦୁକର କହିଲା ।

"ବାଜେ କଥା କୁହନା । ତମେ ଯଦି ରାଜା, ମୁଁ ତେବେ କିଏ ?"

"ବୋଧହୁଏ ଯାଦୁକର !" ଯାଦୁକର ଜବାବ୍ ଦେଲା ।

"ମୋତେ ଯାଦୁର ବିନ୍ଦୁ ବିସର୍ଗ ଜଣାନାହିଁ । ଜଣାଥିଲେ ଏ ପଥର ସବୁକୁ ଲଡୁ କରି ଦିଅନ୍ତି ।" ରାଜା କହିଲେ ।

"ତମକୁ ଜଣା । ଭୁଲି ଯାଇଛ । ଯେମିତି ମୁଁ ଅର୍ଥାତ୍ ରାଜା, ଗୁପ୍ତ ଗନ୍ତାଘରର ଚାବିଟି କେଉଁଠାରେ ଅଛି ଭୁଲି ଯାଇଛି । ତମେ କହିଦିଅ । ତା'ହେଲେ ପୁଣି ମୁକ୍ତ ପବନ ଓ ସୂର୍ଯ୍ୟାଲୋକ ଭିତରକୁ ଲେଉଟି ଆସିବ ।"

ରାଜା ବଲ ବଲ କରି ଅନାଇଲେ ଓ କାନ୍ଦ ଚାପିରଖି କହିଲେ, "ମୋତେ ଏଠାରୁ ଶୀଘ୍ର ବାହାର କରି ନିଅ ଓ ଖାଇବାକୁ ଦିଅ !"



"ଜରୁର ଖାଇବାକୁ ଦେବା । କିନ୍ତୁ ପ୍ରଥମେ ଗୁପ୍ତ ଗନ୍ତାଘରର ଚାବି କେଉଁଠି ଅଛି କହି ପକାଅ !"

"କହିବି ନାହିଁ ! ନା !!" ରାଜା ପାଟିକରି କହିଲେ । "ମୁଁ ତମ ଚାଲାକି ବୁଝିଗଲିଣି । ତମେ ମୋତେ ସାତଦିନ କାଳ ଭୋକିଲା ରଖିବାର କାରଣ ବର୍ତ୍ତମାନ ତମକୁ ବାଧାଦେବା ଭଳି ବଳ ମୋ'ର ନଥିବ । ତମେ ବଦ୍‌ମାସ୍, ସୈତାନ୍ ।"

ଯାଦୁକର ତା' ସହକାରୀ ଧରିଥିବା ଥାଳିରୁ ଲଡୁଟିଏ ଉଠାଇନେଇ ପାଟିରେ ପକାଇଲା । ରାଜା ବିକଳ ଭାବରେ ଅନାଇ ରହିଥାନ୍ତି ।

"ମୋତେ ମୋ ଜଳଖିଆ ଦିଅ !" ସେ ଗର୍ଜନ କଲେ, କିନ୍ତୁ କଣ୍ଠସ୍ୱର ପଡିଗଲା ।



ଯାଦୁକର ତାଙ୍କ ହାତକୁ ଲଡ଼ୁଟିଏ ବଢ଼ାଇ ଦେଇ କହିଲା, "ଦୈନିକ ଗୋଟାଏ ଲଡ଼ୁହିଁ ମିଳୁଥିବ—ଯେଯାଏ ଗୁପ୍ତ ଗନ୍ତାଘରର ଗୃହ କେଉଁଠି ଅଛି କହି ନ ଦେଇଛ ।"

"କହିଦେଲେ ତେଣିକି ଗୋଟାଏ ଲଡ଼ୁ ବି ଆଉ ମିଳିବ ନାହିଁ । ମୁଁ ମରିବି । ତମ ଗୃଭୁଘଚର ଭୁଲିଗଲି ମୁଁ ! ହାୟ ହାୟ, ମୁଁ କେଡ଼େ ବୋକା !"

ରାଜା ଲଡ଼ୁଟି ଖାଉଁ ଖାଉଁ ଗାଉଁ ଗାଉଁ କରି କହିଲେ ।

• * •

"ଦିଗନ୍ତରେ ସେ ନୀଳ ପର୍ବତମାଳା ଦେଖୁଛ ? ତାକୁ ଅତିକ୍ରମ କରିବା ସହଜ ନୁହେଁ, କିନ୍ତୁ ତମ ବ୍ରତ ସମ୍ପୂର୍ଣ୍ଣ ହେବା ନିମନ୍ତେ ତମକୁ ସେଥିରେ ସଫଳ ହେବାକୁ ପଡ଼ିବ ।" ସନ୍ନ୍ୟାସୀ ରାଜୁକୁ କହିଲେ ।

"ମହାତ୍ମା ! ମୁଁ ନିଜକୁ ଅଦୃଶ୍ୟ ଶକ୍ତି ତରଙ୍ଗରେ ପରିଣତ କରି ପୁଣି ସେ ତରଙ୍ଗରୁ ମୋ କଳେବର ଫେରି ପାଇବାର ସୂତ୍ର ଜାଣିଛି । ଜ୍ଞାନବିଜ୍ଞାନ ରାଜ୍ୟରୁ ସେତକ ଶିଖିଥିଲି ।" ରାଜୁ କହିଲା ।

"ସେ ସୂତ୍ର ମଣିଷ ଜଗତରେ କାମ ଦେବ । ତମେ ବର୍ତ୍ତମାନ ଏକ ଭିନ୍ନ ରାଜ୍ୟରେ ପ୍ରବେଶ କରୁଛ । ସେଠାକାର ଅଧିବାସୀମାନେ ଦେଖି-ବାକୁ ମଣିଷ ଭଳି, କିନ୍ତୁ ମଣିଷ ନୁହନ୍ତି ।" ସନ୍ନ୍ୟାସୀ କହିଦେଲେ ।

"ତେବେ ଯେତେ କଷ୍ଟ ହେଲେ ବି ମୁଁ ପର୍ବତମାଳା ଅତିକ୍ରମ କରିବାର ଚେଷ୍ଟା କରିବି !" ରାଜୁ କହିଲା ।

ତା'ହେଲେ ବି ତମେ ଯାଇ ପହଞ୍ଚିବ ଏକ ଅରଣ୍ୟ ଭିତରେ । କିନ୍ତୁ ସେ ଅରଣ୍ୟର କୌଣସି ବାସିନ୍ଦା ତମ ଆଖିରେ ଦିଶିବେ ନାହିଁ ।" ସନ୍ନ୍ୟାସୀ କହିଲେ ।

"ମହାତ୍ମା ! ଆପଣଙ୍କ ଛଡ଼ା ଆଉ ବା କିଏ ମୋତେ ଏ ଦିଗରେ ଏତେ ସହାୟତା ଦେଇପାରିବ ?" ରାଜୁ ସଙ୍କୋଚ ଓ ଶ୍ରଦ୍ଧା ସହକାରେ କହିଲା ।

ନୀରବରେ ସନ୍ନ୍ୟାସୀ ରାଜୁର ହାତ ଧରିନେଇ ପର୍ବତଶ୍ରେଣୀ ଆଡ଼େ ଅଗ୍ରସର ହେଲେ । ରାଜୁର

ମନେ ହେଲା ସତେ ଅବା ସେ ଲୁବ ତଡ଼େଇର ଘରଟିଏ ଭଳି ହାଲୁକା ହୋଇଯାଇ ଉଡ଼ି ବୁଲୁଛି ! ଅମାପ ଶାନ୍ତିରେ ତା' ହୃଦୟ ଭରିଗଲା । ସମସ୍ତ ଚିନ୍ତା ହେଲା ଦୂରୀଭୂତ । ସେ ଆଖି ବୁଜିଦେଲା । କେତେ ସମୟ ଧରି ସେ ବୁଲୁଥିଲା, ସେକଥା ସେ ଜାଣେନା ।

କେଇ ମୁହୂର୍ତ୍ତ ପରେ ଏକ ନୂଆ ଧରଣର ଅନୁଭୂତି ହେବାରୁ ସେ ଆଖି ଖୋଲିଲା । ଦେଖିଲା, ସେ ବସିଛି ଏକ ଶିଳାଖଣ୍ଡ ଉପରେ । ପାଖରେ ବସିଛନ୍ତି ସନ୍ନ୍ୟାସୀ ।

ସେତେବେଳେ ପ୍ରଶାନ୍ତ ପ୍ରଭାତ । ପୂର୍ବାକାଶରେ ମେଘମାନେ ଦିଶୁଥିଲେ ବିଶାଳକାୟ ଏକ ଏକ ଜଳ ବିମ୍ବ ଭଳି—ସତେ ଅବା ହଠାତ୍ ଫାଟିଯିବେ ଏବଂ ତାହାଦ୍ୱାରା ଜଗତ କୌଣସି ଅଜଣା ଆନନ୍ଦରେ ପ୍ଲାବିତ ହେବ ।

ତଳେ ପ୍ରାନ୍ତର ଉପରେ କେତେକ ସୁନ୍ଦର ବୃକ୍ଷଶ୍ରେଣୀ ଶୋଭା ପାଉଥିଲେ । କିନ୍ତୁ ସେମାନଙ୍କ ଅଗ୍ରଦେଶ ମେଘମାଳା ଭିତରେ ଲୁଚି ରହିଥିଲେ ।

"ବାପ୍‌ରେ ! ଏତେ ଉଚ୍ଚ ବୃକ୍ଷ ଶ୍ରେଣୀ ଅଛନ୍ତି ବୋଲି ମୁଁ ଜାଣି ନଥିଲି ।" ରାଜୁ କହିଲା ।

"ସେମାନେ ଏମିତି ଉଚ୍ଚ ରହିବେ ନାହିଁ । ଉପରେ ପକ୍ଷୀଶିଶୁମାନଙ୍କୁ ମଧୁର ଫଳଟିମାନ ତୋଳିବାର ସୁଯୋଗ ଦେବା ନିମନ୍ତେ ଏ ବୃକ୍ଷମାନେ ସାମୟିକ ଭାବରେ ଦୀର୍ଘ ହୋଇଯାଆନ୍ତି !" କହିଲେ ସନ୍ନ୍ୟାସୀ । ରାଜୁ ଏ ବିସ୍ମୟକର କଥା ଶୁଣିସାରି ତାଙ୍କ ଆଡ଼ୁ ଆଖି ଫେରାଇ ପୁଣି–ବୃକ୍ଷଶ୍ରେଣୀ ଆଡ଼େ ଅନାଇବା ବେଳକୁ ସେମାନେ ସ୍ୱାଭାବିକ ହୋଇ ଗଲେଣି ।

"ଆମେ ଏକ ଆଶ୍ଚର୍ଯ୍ୟ ରାଜ୍ୟରେ ନିଶ୍ଚୟ !" ରାଜୁ କହିଲା ।

"ଆମେ ମାନବ ଜଗତ ଓ ଏକ ମହତ୍ତର ଜୀବ ଜଗତର ସୀମାନ୍ତରେ । ତମେ ସେ ମହତ୍ତର ଜୀବମାନଙ୍କୁ ଶୀଘ୍ର ଭେଟିବ ।" ସନ୍ନ୍ୟାସୀ କହିଲେ ।

ଏକ ପ୍ରକାର ଅଶ୍ରୁତପୂର୍ବ ଧ୍ୱନିରେ ରାଜୁ ଚମକି ପଡ଼ିଲା । ସେ ବୁଲିପଡ଼ି ଯାହା ଦେଖିଲା, ସେଥିରେ ସେ ସ୍ତମ୍ଭୀଭୂତ ହୋଇଗଲା । (କ୍ରମଶଃ)





# ଅରଣ୍ୟରେ ରାଜକନ୍ୟା

ନିଶା ଗରଜୁଥାଏ । ଭୁହାକୁ ଭୁହା ବର୍ଷା ହେଉଥାଏ । ଘନ ଘନ ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଝଟକି ଉଠୁଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଚାଲିଉଠି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ, ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରନ୍ତେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ହେ ରାଜନ୍! ତୁମେ ଯେପରି ସାହସ ଓ ଧୈର୍ଯ୍ୟ ସହକାରେ ଏ ଦୁର୍ଯୋଗପୂର୍ଣ୍ଣ ରାତିରେ ଏଠାରେ ଏଭଳି ପରିଶ୍ରମ କରୁଛ, ତାହା ଦେଖି ମୋର ତୁମ ପ୍ରତି ସମ୍ମାନ ବଢ଼ି-

## ବେତାଳ କଥା



ଯାଉଛି, କିନ୍ତୁ ଏହାର ପରିଣତି କ'ଣ? ପଶ୍ଚିମପୁରର ରାଜା ବୀରସିଂହ ଭଳି ଶେଷ ମୁହୂର୍ତ୍ତରେ ସୁଯୋଗ ପାଇ ମଧ୍ୟ ତାହା ଛାଡ଼ିଦେବ ନାହିଁ ତ? ତମକୁ ସେ କାହାଣୀ କହୁଛି, ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲଘବ ମନେ ହେବ।"

ବେତାଳ କହିଲା: ବିନକା ରାଜ୍ୟର ରାଜକୁମାରୀ କୁମୁଦିନୀ ଅତ୍ୟନ୍ତ ସୁନ୍ଦରୀ ଥିଲେ। ତାଙ୍କୁ ବିବାହ କରିବା ନିମନ୍ତେ ଅନେକ ରାଜପୁତ୍ର ଆଗ୍ରହୀ ଥିଲେ। କିନ୍ତୁ ସେ କୁନ୍ତଳ ରାଜ୍ୟର ରାଜକୁମାର ବସନ୍ତସେନଙ୍କୁ ବିଭା ହେବାକୁ ଚାହୁଁଥିଲେ।

ଦିନେ ରାଜଧାନୀଠାରୁ କିଛି ଦୂରରେ ଥିବା ଜଗୋଟିଏ ବଣ ଭିତରକୁ ବୁଲିବାକୁ ଗଲେ ରାଜକୁମାରୀ। ସାଥିରେ ଗଲେ ସଖୀଗଣ। ବଣରେ କିଛି ସମୟ ବୁଲି ସାରି ରାଜକୁମାରୀ ଉଆସକୁ ଫେରିବା ପାଇଁ ରଥ ଉପରକୁ ଉଠିଗଲେ। କିନ୍ତୁ ସଖୀମାନେ ଓ ରଥ-ଚାଳକ ଉଠିବା ପୂର୍ବରୁ ହଠାତ୍ ବଣ ଭିତରେ ଦଳେ ମତ୍ତ ହାତୀ ରଡ଼ି ଛାଡ଼ି ସେଆଡ଼େ ମାଡ଼ି ଆସୁଥିବାର ଶବ୍ଦ ଶୁଭିଲା। ଘୋଡ଼ା ଦୁଇଟି ଅଚାନକ ଦୌଡ଼ିଲେ। ରଥ ସହ ରାଜକୁମାରୀ ବି ଚାହୁଁ ଚାହୁଁ ବଣ ଭିତରେ ଅଦୃଶ୍ୟ ହୋଇଗଲେ।

ରାଜକୁମାରୀ କ'ଣ କରିବେ ବୁଝିପାରୁ ନଥାନ୍ତି। ବିନା ଚାଳକରେ ଘୋଡ଼ାମାନେ ଭୀତଗ୍ରସ୍ତ ହୋଇ ଏଭଳି ଦୌଡ଼ୁଥା'ନ୍ତି ଯେ ରଥ ଓଲଟି ପଡ଼ିବା ଅବସ୍ଥାକୁ ଆସିଗଲା। ରାଜକୁମାରୀ ଚିତ୍କାର କଲେ।

ବଣ ଭିତରୁ ଜଣେ ଘୋଡ଼ସବାର୍ ସେଆଡ଼େ ଆସୁଥିଲା। ସେ ରାଜକୁମାରୀଙ୍କ ଅବସ୍ଥା ବୁଝିପାରି ଅତି କୌଶଳରେ ରଥ ପାଖକୁ ଯାଇ ତାଙ୍କୁ ଉଡ଼ାଇ ଆଣିଲା। ଖାଲି ରଥକୁ ଧରି ଘୋଡ଼ାମାନେ ପଳାଇଗଲେ।

ରାଜକୁମାରୀ ସେ ଘୋଡ଼ସବାର୍ ଯୁବକକୁ ଧନ୍ୟବାଦ ଦେଲେ ଓ କହିଲେ, "କିଏ ତୁମେ? ବଣ ଭିତରେ କ'ଣ କରୁଥିଲ?"

ଯୁବକ କହିଲା, "ହେ ସୁନ୍ଦରୀ, ମୋ ନାମ ପ୍ରତାପ ସିଂହ।"

ରାଜକୁମାରୀ ଚମକି ପଡ଼ି କହିଲେ, "ତୁମେ ଆମ ରାଜ୍ୟ ସୀମାନ୍ତରେ ଆତଙ୍କ ସୃଷ୍ଟି କରୁଥିବା ଡାକୁ ପ୍ରତାପ ସିଂହ ନୁହଁ ତ?"

ଯୁବକ ମୁଣ୍ଡ ତଳକୁ କରି କହିଲା, "ବୁଝୁଛି, ଆପଣ ରାଜକୁମାରୀ କୁମୁଦିନୀ । ଆପଣଙ୍କ ଆଗରେ ମିଛ କହିବାକୁ ମନ ବଳୁ ନାହିଁ । ମୁଁ ବାସ୍ତବିକ ଡାକୁ ପ୍ରତାପ ସିଂହ । ମୁଁ ଡାକୁଗିରି ଛାଡି ଦିଅନ୍ତି, ଯଦି…"

"ଯଦି କ'ଣ ?" ରାଜକୁମାରୀ ପଚାରିଲେ ।

"ଯଦି ଆପଣଙ୍କୁ ବିବାହ କରି ପାରନ୍ତି ।" ଡାକୁ ସଙ୍କୋଚ ଛାଡି କହିଲା ।

"ନା, ତାହା ସମ୍ଭବ ନୁହେଁ ।" ରାଜକୁମାରୀ ନମ୍ର କିନ୍ତୁ ଦୃଢ଼ କଣ୍ଠରେ କହିଲେ ।

"ଆପଣଙ୍କ ଇଚ୍ଛା, ରାଜକୁମାରୀ । ଚାଲନ୍ତୁ, ଆପଣଙ୍କୁ ଉଆସରେ ଛାଡି ଦେଇ ଆସେଁ । ପାଖରେ ମୋର ଅନ୍ୟ ଏକ ଘୋଡ଼ା ଅଛି । ମୁଁ ଆଣୁଛି ।" ଡାକୁ ଏହା କହି ବୁଲି ପଡିବା ବେଳକୁ ହଠାତ୍ ଶୁଭିଲା ବିକଟ ଅଟ୍ଟହାସ୍ୟ । "ଆରେ, ଆମ ଜୀବନ ବିପନ୍ନ ! କିଛିଦିନ ହେଲା ଗୋଟାଏ ରାକ୍ଷସ ଆସି ଏ ବଣରେ ପହଞ୍ଚିଛି । ଇଏ ତାହାର ଅଟ୍ଟହାସ୍ୟ । ଦୌଡ଼ ଦୌଡ଼ !" ଏହା କହି ଡାକୁ ଦୌଡ଼ିଲା । କିନ୍ତୁ ରାଜକୁମାରୀ ଦୌଡ଼ି ପଳାଇବା ପୂର୍ବରୁ ଗଛଲତା ମଡ଼ି ମଡ଼ି ଭାଙ୍ଗି ସେଠାରେ ପହଞ୍ଚିଗଲା ରାକ୍ଷସ ।

ରାଜକୁମାରୀ କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହୋଇ ରହିଲେ । ରାକ୍ଷସ ତାଙ୍କୁ ଅନାଇ ବିସ୍ମିତ ଭାବରେ ଟିକିଏ ରହି କହିଲା, "କିଏ ତୁମେ ?"

"ମୁଁ ବିନକାର ରାଜକୁମାରୀ । ବଣ ଭିତରକୁ ବୁଲି ଆସି ଏଭଳି ଦୁର୍ଯୋଗରେ ପଡିଛି ।" ରାଜକୁମାରୀ ଉତ୍ତର ଦେଲେ ।






"ରାଜକୁମାରୀ ! ଏହାକୁ ଦୁର୍ଯୋଗ ବୋଲି କାହିଁକି କହୁଛ ? ଏହାକୁ ସୁଯୋଗରେ ପରିଣତ କରିପାରିବା । ଚାଲ, ବିଭା ହେବା । ମୁଁ ସଞ୍ଚୟ କରି ରଖିଛି ବହୁତ ସମ୍ପଦ । ତା'ଛଡ଼ା ମୋ ଶକ୍ତି ଆଗରେ କୌଣସି ରାଜା ରାଜପୁତ୍ର ଠିଆ ହୋଇ ପାରିବେ ନାହିଁ ।" ରାକ୍ଷସ କହିଲା ।

"ଧନ୍ୟବାଦ । କିନ୍ତୁ ରାକ୍ଷସ ! ତମ ପ୍ରସ୍ତାବ ମୁଁ ଗ୍ରହଣ କରିପାରିବ ନାହିଁ । ତମେ ବରଂ ମୋତେ ଭକ୍ଷଣ କରିପାର ।"

"ଛିଃ, ତମ ଭଳି ସୁନ୍ଦରୀକୁ ଖାଇ ହେବ ?" ଏହା କହି ରାକ୍ଷସ ଚାଲିଗଲା । ରାଜକୁମାରୀ କୁଆଡ଼େ ଯିବେ, କ'ଣ କରିବେ ଭାବି ଭାବି ଆଗକୁ ଆଗକୁ ଚାଲିଥାନ୍ତି । ଦୈବକୁ ଗୋଟାଏ ସ୍ଥାନରେ ସେ ଗଛଲତା କଟାକଟି ହୋଇ ତପୋବନ ଭଳି ସ୍ଥାନ ପ୍ରସ୍ତୁତ କରା ହୋଇଥିବାର ଦେଖିଲେ । ପରେ ପରେ ସେ ଦେଖିଲେ, ଗୋଟିଏ ବରଗଛ ତଳେ, ଗୋଟିଏ କୁଟୀର ଆଗରେ, ଜଣେ ଯୁବକ ସନ୍ନ୍ୟାସୀ ବସିଛନ୍ତି । ରାଜକୁମାରୀଙ୍କ ପାଦ ଶବ୍ଦ ଶୁଣି ସନ୍ନ୍ୟାସୀ ଅନାଇଲେ । ରାଜକୁମାରୀ ତାଙ୍କୁ ନିଜ ପରିଚୟ ଦେଇ ସବୁ କଥା କହିଲେ । ସନ୍ନ୍ୟାସୀ କହିଲେ, "ତାମ୍ରପଲ୍ଲିର ରାଜା ବିବିଧଭୂଷଣଙ୍କ ନାମ ଶୁଣିଛ ?"

"ହଁ ଯୋଗୀବର । ସେ ତ ସନ୍ନ୍ୟାସ ନେଇ ରାଜ୍ୟ ଛାଡି ଯାଇଛନ୍ତି ।" ରାଜକୁମାରୀ କହିଲେ ।

"ଠିକ୍ । ସେ ପୁଣି ରାଜ୍ୟକୁ ଫେରିଯାଇ ସିଂହାସନରେ ବସିବେ—ଯଦି ତୁମେ ରାଣୀ ରୂପେ ତାଙ୍କ ପାଖରେ ବସିବ ।" ସନ୍ନ୍ୟାସୀ ମୃଦୁ ମୃଦୁ ହସି କହିଲେ ।

ରାଜକୁମାରୀ ବୁଝିଲେ, ସେ ସନ୍ନ୍ୟାସୀ ଆଉ କେହି ନୁହନ୍ତି, ରାଜା ବିବିଧ ଭୂଷଣ ।

"ଯୋଗୀବର ! ତାହା ସମ୍ଭବପର ନୁହେଁ । ପ୍ରୟୋଜନ ହେଲେ ମୁଁ ବରଂ ନିଜେ ସନ୍ନ୍ୟାସିନୀ ହେବ, କିନ୍ତୁ ଆପଣଙ୍କୁ ବିଭା ହେବା ସମ୍ଭବ ନୁହେଁ ।"

ସନ୍ନ୍ୟାସୀ ରାଜା ଗମ୍ଭୀର ହୋଇ କହିଲେ, "ବେଶ୍ । ଏହିଠାରେ ରାତି ଯାପନ କର । ପ୍ରଭାତରେ ମୁଁ ଯାଇ ବନକାରେ ଛାଡିଦେଇ ଆସିବ ।"

ରାଜକୁମାରୀ ଏଥିରେ ସମ୍ମତ ହେଲେ । ସେତିକବେଳେ ସେଠାରେ ରାଜା ଭଳି ଦିଶୁଥିବା ଜଣେ ଯୁବକ ପହଞ୍ଚିଲେ ଓ ସନ୍ନ୍ୟାସୀଙ୍କୁ କହିଲେ, "ମହାତ୍ମା ! ମୁଁ ଧୂନ୍ଦୁ ଦେଶର ରାଜା । ଶୀକାର କରିବାକୁ ଆସି ବାଟ ହୁଡିଗଲି । ବର୍ତ୍ତମାନ ଅବଶ୍ୟ ବାଟ ବୁଝିପାରିଲିଣି । ତେବେ ଶୋଷ ଲାଗୁଛି ।"

"ବେଶ୍, ପାଣି ଦେଉଛି !" ସନ୍ନ୍ୟାସୀ ରାଜା ପାଣି ଦେଇ କହିଲେ, "ଧୂନ୍ଦୁ ରାଜ ! ଏ ରାଜକନ୍ୟା ମଧ୍ୟ ବାଟ ହୁଡି ଏଠି ପହଞ୍ଚିଛନ୍ତି । ଆପଣ ଏହାଙ୍କୁ ତାଙ୍କ ଉଆସରେ ପହଞ୍ଚାଇ ଦେଇ ପାରିବେ ?" ଏହା କହି ସନ୍ନ୍ୟାସୀ ରାଜା ରାଜକୁମାରୀଙ୍କ ପରିଚୟ ଦେଲେ ।

ଧୂନ୍ଦୁ ରାଜ ଚମକି ଉଠିଲେ ଓ ତା'ପରେ ଅତି ଆଗ୍ରହରେ କହିଲେ, "ନିଶ୍ଚୟ, ନିଶ୍ଚୟ ! ଆସନ୍ତୁ ।" ଏହା କହି ରାଜକନ୍ୟାଙ୍କୁ ନିଜ ଘୋଡ଼ା ଆଡ଼କୁ ବାଟ ଦେଖାଇ ନେଇଗଲେ । ରାଜକୁମାରୀ ଅଗତ୍ୟା ତାଙ୍କ ସହ ଗଲେ ଓ ତାଙ୍କ ପାଖରେ ଘୋଡ଼ାରେ ବସିବାକୁ ବାଧ୍ୟ ହେଲେ ।

"ରାଜକୁମାରୀ ! ଦିନକାରେ ପହଞ୍ଚିବା ପୂର୍ବରୁ ଆମ ଧୂନ୍ଦୁ ଦେଶର ରାଜଧାନୀ ପଡିବ । ଆଜି ରାତିରେ ସେଠାରେ ବିଶ୍ରାମ କରି କାଲି ସକାଳେ ଯିବ ।" ଧୂନ୍ଦୁ ଦେଶ ଆଡ଼େ ଘୋଡ଼ା ଛୁଟାଇ ଧୂନ୍ଦୁ ରାଜ କହିଲେ ।

"ନା ମହାରାଜ, ମୋ ପିତାମାତା ପୁରପରିଜନ ବ୍ୟାକୁଳ ହେଉଥିବେ । ଆପଣ ସିଧା ବାଟରେ ଚାଲନ୍ତୁ, ନଚେତ୍ ଆଉ କାହାକୁ ମୋ ସାଥିରେ ଦିଅନ୍ତୁ ।" ରାଜକୁମାରୀ କହିଲେ ।





"ରାଜକୁମାରୀ, ମୋ ଉଆସରେ ତମେ ଏପରି ଗୋଟିଏ ଦୃଶ୍ୟ ଦେଖିବ, ଯାହା ଦ୍ୱାରା ତୁମ ମନ ବଦଳିଯିବ।" ଏହା କହି ଆଉ କିଛି ନ ଶୁଣି ଧୂନ୍ଦୁରାଜ ରାଜକୁମାରୀଙ୍କୁ ଧରି ନିଜ ଉଆସରେ ପହଞ୍ଚିଲେ ଓ ଉଆସ ଭିତରକୁ ନେଇଯାଇ ଗୋଟିଏ ପ୍ରତିକୃତି ଦେଖାଇଲେ।

ରାଜକୁମାରୀ ଦେଖିଲେ, ସେ ପ୍ରତିକୃତି ତାଙ୍କରି। ଧୂନ୍ଦୁରାଜ କହିଲେ, ବହୁତ ଦିନରୁ ତୁମକୁ ବିଭା ହେବାକୁ ମନ କରିଛି। ତମ ଦରବାରର ଶିଳ୍ପୀଠୁଁ ଏ ଚିତ୍ରପଟ ହାସଲ କରିଛି। ଆଶ୍ଚର୍ଯ୍ୟର କଥା, ମୁଁ ବିବାହ ପ୍ରସ୍ତାବ ପଠାଇଥିଲି। କିନ୍ତୁ ତୁମ ପିତା କିଛି ଉତ୍ତର ଦେଲେ ନାହିଁ। ଯାହାହେଉ, ସୁଯୋଗ ବଳେ ବଳେ ଆସିଗଲା। ଆଗାମୀ କାଲି ବିଭା ହେବା।"

"ନା, ମହାରାଜ, ଅସମ୍ଭବ।" ରାଜକୁମାରୀ ଦୃଢ଼ କଣ୍ଠରେ କହିଲେ।

"ଅସମ୍ଭବକୁ ମୁଁ ସମ୍ଭବ କରିବି। ପ୍ରୟୋଜନ ହେଲେ ତୁମ ରାଜ୍ୟ ଆକ୍ରମଣ କରିବି।" ଧୂନ୍ଦୁରାଜ କହିଲେ।

ରାଜକୁମାରୀ ହଠାତ୍ ଅଟ୍ଟହାସ୍ୟ କଲେ। ସେ ଅଟ୍ଟହାସ୍ୟରେ ଧୂନ୍ଦୁରାଜ ଚମକି ପଡିଲେ। କିଛି ସମୟ ପରେ ସେ ପଚାରିଲେ, "ଏଭଳି ହସର କାରଣ?"

ରାଜକୁମାରୀ କହିଲେ, "ମହାରାଜ! ବର୍ତ୍ତମାନ ମୁଁ ଅସହାୟ। ଯଦି ଆପଣ ମୋତେ ଜୋର କରି ବିବାହ କରିବେ, ତେବେ ତହିଁ ପୂର୍ବରୁ ଗୋଟାଏ କାମ କରନ୍ତୁ। ଡାକୁ ପ୍ରତାପ ସିଂହ, ରାକ୍ଷସ ଏବଂ ସନ୍ନ୍ୟାସୀ—ଏ ତିନିଜଣଙ୍କୁ ନିମନ୍ତ୍ରଣ କରି ଆଣନ୍ତୁ। ଡାକୁ ଓ ରାକ୍ଷସଙ୍କୁ ଅଭିନନ୍ଦନ ଜଣାନ୍ତୁ। ସନ୍ନ୍ୟାସୀଙ୍କୁ ଦଣ୍ଡ ଦିଅନ୍ତୁ। ଆଉ ଆପଣ ଅନ୍ତତଃ ରାଜପଦ ତ୍ୟାଗ କରନ୍ତୁ।"

ଏହା କହି ହାସ୍ୟ ସମ୍ବରଣ କରି ରାଜକୁମାରୀ ଅଶ୍ରୁମୋଚନ କଲେ।

ଧୂନ୍ଦୁରାଜ ନୀରବରେ ଠିଆ ହୋଇ ରହି ତା'ପରେ ଧୀର କଣ୍ଠରେ କହିଲେ, "ରାଜକୁମାରୀ, କ୍ଷମା କର।" ଏହାପରେ ସେ ରଥର ବ୍ୟବସ୍ଥା କରି ରାଜକୁମାରୀଙ୍କୁ ବିନକା ପଠାଇବାର ବ୍ୟବସ୍ଥା କଲେ।

ବେତାଳ ଟିକିଏ ଚୁପ୍ ରହି ତା’ପରେ କଣ୍ଠସ୍ୱର ତୀବ୍ର କରି ପ୍ରଶ୍ନ କଲା, “ରାଜା ! ହଠାତ୍ ରାଜକନ୍ୟା କାହିଁକି ଅଟ୍ଟହାସ୍ୟ କଲେ ? ଡାକୁ ଓ ରାକ୍ଷସକୁ ଅଭିନନ୍ଦନ ଜଣାଇବାର ପ୍ରସ୍ତାବ ଦେବା ସଙ୍ଗେ ସଙ୍ଗେ ସନ୍ନ୍ୟାସୀ-ରାଜାଙ୍କୁ ଦଣ୍ଡ ଦେବାକୁ କହିଲେ କାହିଁକି ? ଧୂନ୍ଦୁରାଜଙ୍କୁ ରାଜପଦ ତ୍ୟାଗ କରିବାକୁ କହିଲେ କାହିଁକି ? ପରେ ପରେ ଅଶ୍ରୁ ମୋଚନ କଲେ କାହିଁକି ? ରାଜା ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତିଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।”

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, “ରାଜକନ୍ୟାଙ୍କ ଅଟ୍ଟହାସ୍ୟ ଓ ଅଶ୍ରୁ-ମୋଚନ—ଏ ଉଭୟର କାରଣ ଏକ : ଭାଗ୍ୟର ବିଡ଼ମ୍ବନା— ଯାହା ଫଳରେ ବଣ ଭିତରକୁ ଆନନ୍ଦ ପାଇଁ ଆସି ସେ ଏପରି ଦୁଃଖରେ ପଡ଼ିଲେ । ଅସଲ ପ୍ରଶ୍ନ ହେଲା ଅନ୍ୟଟି । ଡାକୁ ଓ ରାକ୍ଷସ ଉଭୟେ ତାଙ୍କ ଅନିଚ୍ଛା ଜାଣିବା ମାତ୍ରେ ସସମ୍ମାନେ ତାଙ୍କୁ ଛାଡ଼ି ଦେଇଥିଲେ । ଧୂନ୍ଦୁରାଜ ଜଣେ ରାଜା ଭାବରେ ଅନ୍ୟମାନଙ୍କ ପ୍ରତି ନ୍ୟାୟ କରିବା କଥା । ଅଥଚ ସେ ଅନ୍ୟାୟ ଭାବରେ ରାଜକୁମାରୀଙ୍କ ମନ ବିରୁଦ୍ଧରେ ତାଙ୍କୁ ବିଭା ହେବାକୁ ପ୍ରସ୍ତୁତ ଥିଲେ । ତେଣୁ ଏକ ପକ୍ଷରେ ଡାକୁ ଓ ରାକ୍ଷସ ଅଭିନନ୍ଦନୀୟ ଓ ରାଜା ଅନ୍ତତଃ ରାଜପଦରେ ନରହି ଜଣେ ସାଧାରଣ ନାଗରିକ ହେବା ଉଚିତ । ସନ୍ନ୍ୟାସୀ-ରାଜାଙ୍କୁ ଦଣ୍ଡଦେବାକୁ କହିବାର କାରଣ, ରାଜ-କୁମାରୀ ସନ୍ନ୍ୟାସୀଙ୍କ ପାଖରେ ଆଶ୍ରୟ ନେଇଥିଲେ । ଆଶ୍ରିତ ଯେପରି ନିରାପଦ ରହିବ ତାହା ଦେଖିବା ଆଶ୍ରୟଦାତାର କର୍ତ୍ତବ୍ୟ । କିନ୍ତୁ ସନ୍ନ୍ୟାସୀ ରାଜା ନିଜ ବାସନା ପୂରଣର ସମ୍ଭାବନା ନ ଦେଖି ନିଜ କର୍ତ୍ତବ୍ୟ ଭୁଲି ଜଣେ ଅପରିଚିତ ଲୋକ ହାତରେ ଆଶ୍ରିତକୁ ସମର୍ପି ଦେଲେ । ତେଣୁ ସେ ଦଣ୍ଡନୀୟ ।”

ରାଜାଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)



# ଉପଯୋଗିତା

ମୁକୁନ୍ଦପୁରର ଜମିଦାର ବୀରକିଶୋର ମହାପାତ୍ର ଚେରମୂଳି, ଜଡ଼ିବୁଟି ଇତ୍ୟାଦିର ଉପଯୋଗିତାରେ ଖୁବ୍ ବିଶ୍ୱାସ କରୁଥିଲେ । ମଣିଷର ଯେତେ ପ୍ରକାର ରୋଗ ବେମାରି, ସେସବୁର ଇଲାଜ ଗଛଲତାରେ ଅଛି ବୋଲି ତାଙ୍କର ଧାରଣା ଥିଲା ।

ଅବଶ୍ୟ ତାଙ୍କ ଧାରଣା ଭୁଲ୍ ନଥିଲା । ତାଙ୍କ ପାଖରେ ଥିବା ଜଣେ ବିଶିଷ୍ଟ କବିରାଜ ଦୁଷ୍ପ୍ରାପ୍ୟ ଚେର ମୂଳିରୁ ଔଷଧ ବନାଇ ଅନେକ ରୋଗବ୍ୟାଧି ଭଲ କରି ଦେଉଥାନ୍ତି ।

ଦିନେ କବିରାଜ ନଥିଲା ବେଳେ ବନବାସୀ ବେଶରେ ସଜ୍ଜିତ ଜଣେ ଯୁବକ ଆସି ମହାପାତ୍ରଙ୍କୁ କହିଲା, "ଆଜ୍ଞା, ମୁଁ ଏଭଳି କିଛି ଚେର ଆଣିଛି, ଯାହା ପ୍ରାୟ ମିଳେ ନାହିଁ । କବିରାଜ ଥିଲେ ମୋତେ ଶହେଟଙ୍କା ଦେଇଥାନ୍ତେ ।"

"କବିରାଜ ନଥିଲେ ତ କ'ଣ ହେଲା ? ମୁଁ ଶହେ ଟଙ୍କା ଦେବି । କିନ୍ତୁ ଶପଥ କରି କୁହ, ଏହାର ଉପଯୋଗିତା ଅଛି ତ ?" ମହାପାତ୍ର ପଚାରିଲେ ।

"ଶପଥ କରି କହୁଛି ଆଜ୍ଞା, ଏହାର ଉପଯୋଗିତା ବହୁତ ।" ଯୁବକ କହିଲା ।

ସେତିକିବେଳେ କବିରାଜ ପହଞ୍ଚିଗଲେ । ଜମିଦାର ତାଙ୍କୁ ଚେରତକ ଦେଇ ଦେଖିବାକୁ କହିଲେ । ଯୁବକଟି ଖସି ଚାଲିଗଲା । କବିରାଜ କହିଲେ, "ଏହା କୌଣସି କାମରେ ଲାଗିବ ନାହିଁ ।" "ଆରେ, ସେ ଟୋକା ଯେ ଶପଥ କରି କହିଲା ଏହାର ଉପଯୋଗିତା ଅଛି ?" ମହାପାତ୍ର ଆଶ୍ଚର୍ଯ୍ୟ ହୋଇ କହିଲେ ।

କବିରାଜ ହସିଲେ ଓ ବୁଝାଇ ଦେଲେ, "ସେ ମିଛ କହିନାହିଁ । ଯଦି ଏହା ଦେଇ ସେ ଶହେଟଙ୍କା ପାଇବାକୁ ଯାଉଥିଲା, ଏହାର ଉପଯୋଗିତା ନାହିଁ ବୋଲି ସେ କିପରି କହନ୍ତା ?"



ପ୍ରାଚୀନ ସାହିତ୍ୟର କାହାଣୀ

# ମୁଦ୍ରା ରାକ୍ଷସ-୩

(କାହାଣୀ ଏଯାବତ୍) : ଚାଣକ୍ୟଙ୍କ ସହଯୋଗରେ ଚନ୍ଦ୍ରଗୁପ୍ତ ମଗଧର ସିଂହାସନରେ ବସିଲେ । ସେମାନଙ୍କୁ ଏଥିରେ ସାହାଯ୍ୟ କରିଥିବା ପର୍ବତକ ନାମକ ଜଣେ ସୀମାନ୍ତବର୍ତ୍ତୀ ରାଜା ମଗଧର ଅର୍ଦ୍ଧେକ ଦାବୀ କରିବାରୁ ତାଙ୍କୁ ମଧ୍ୟ ହତ୍ୟା କରାଗଲା ।



ନନ୍ଦ ରାଜାଙ୍କ ବିଶ୍ୱସ୍ତ ଓ ବିଚକ୍ଷଣ ମନ୍ତ୍ରୀ ରାକ୍ଷସ ତାଙ୍କ ପରିବାରକୁ ମଗଧର ରାଜଧାନୀ ପାଟଳିପୁତ୍ରରେ ଥିବା ଜଣେ ସୁନାରୀଙ୍କ ଘରେ ଗୁପ୍ତ ଆତ୍ମଗୋପନ କରି ପଳାଇଗଲେ ! ସୁନାରୀ ଚନ୍ଦନଦାସ ଶପଥ କରି କହିଲେ ଯେ ସେ ଦରକାର ହେଲେ ପ୍ରାଣଦେଇ ଆଶ୍ରିତମାନଙ୍କୁ ରକ୍ଷା କରିବ ।





ରାକ୍ଷସ ଯାଇ ପର୍ବତକଙ୍କ ପୁତ୍ର ମଳୟ-କେତୁଙ୍କ ଦରବାରରେ ପହଞ୍ଚିଲେ । ଚନ୍ଦ୍ରଗୁପ୍ତ-ଚାଣକ୍ୟଙ୍କ ଚକ୍ରାନ୍ତରେ ଗୋଟିଏ ନର୍ତ୍ତକୀ ବିଷ ଦେଇ ପର୍ବତକଙ୍କୁ ହତ୍ୟା କରିଥିଲା । ମଳୟକେତୁ ଚନ୍ଦ୍ର-ଗୁପ୍ତ-ଚାଣକ୍ୟଙ୍କ ଉପରେ ପ୍ରତିଶୋଧ ନେବାକୁ ସୁଯୋଗ ଖୋଜୁଥିଲେ । ସେ ରାକ୍ଷସଙ୍କୁ ମନ୍ତ୍ରୀପଦରେ ବରଣ କଲେ ।



ରାକ୍ଷସ ଅମାତ୍ୟମାନଙ୍କର ଦ୍ୱାରସ୍ଥ ହୋଇ ଚନ୍ଦ୍ରଗୁପ୍ତ-ଚାଣକ୍ୟଙ୍କ ବିରୁଦ୍ଧରେ ଜନମତ ସୃଷ୍ଟି କରିବାକୁ ଲାଗିଲେ । ତାଙ୍କ ପ୍ରଭୁ ବଂଶର ନିଧନର ପ୍ରତିଶୋଧ ନେବାକୁ ସେ ଥିଲେ ଦୃଢ଼-ପ୍ରତିଜ୍ଞ । ସେ ଦିଗରେ ସେ ଅକ୍ଲାନ୍ତ ଚେଷ୍ଟା ଚଳାଇଲେ ।

ଚରମାନଙ୍କଠାରୁ ଚାଣକ୍ୟ ରାକ୍ଷସଙ୍କର ଏଭଳି ପ୍ରୟାସର ସମ୍ବାଦ ପାଇଲେ । ସେ ଜାଣିଥିଲେ, ରାକ୍ଷସ ଯେତିକି ବୁଦ୍ଧିମାନ ସେତିକି ପ୍ରଭୁଭକ୍ତ । ସେ ଯେପାଏ ଶତ୍ରୁତା କରୁଥିବେ, ସେପାଏ ଚନ୍ଦ୍ରଗୁପ୍ତଙ୍କ ପକ୍ଷରେ ଶାନ୍ତିରେ ରାଜୁତି କରିବା ଅସମ୍ଭବ ହେବ । ରାକ୍ଷସଙ୍କୁ ଯେପରି ହେଲେ ନିଜ ପକ୍ଷକୁ ଆଣିବାକୁ ସେ ସଂକଳ୍ପ କଲେ ।





ଚାଣକ୍ୟ ସୁନାରୀ ଚନ୍ଦନଦାସଙ୍କୁ ଡକାଇ ଆଣିଲେ ଓ କହିଲେ, "ତୁମେ ରାଜଦ୍ରୋହୀ !" ଚନ୍ଦନଦାସ ନମ୍ର ଭାବରେ ପଚାରିଲେ, "କିପରି ? ମୁଁ କ'ଣ କରିଛି ?" ଚାଣକ୍ୟ ଗର୍ଜନ କରି କହିଲେ, "ତମେ ରାଜାଙ୍କ ଶତ୍ରୁର ପରିବାରକୁ ଆଶ୍ରୟ ଦେଇଛ !"

"ସଙ୍କଟରେ ପଡିଥିବା ଲୋକ ବନ୍ଧୁଙ୍କର ପରିବାରକୁ ଆଶ୍ରୟ ଦେବା ଯେ କୌଣସି ଲୋକର କର୍ତ୍ତବ୍ୟ।" ଚନ୍ଦନଦାସ ଦୃଢ଼ସ୍ୱରେ ଉତ୍ତର ଦେଲେ। ଚାଣକ୍ୟ ତାଙ୍କ କର୍ତ୍ତବ୍ୟବୋଧକୁ ମନେ ମନେ ପ୍ରଶଂସା କରିବା ସତ୍ତ୍ୱେ ମୁହଁରେ କହିଲେ, "ତୁମେ ବନ୍ଦୀ ହେବା ଆବଶ୍ୟକ।" ଚନ୍ଦନଦାସ ବନ୍ଦୀ ହେଲେ।





ଚାଣକ୍ୟ ଚନ୍ଦ୍ରଗୁପ୍ତଙ୍କୁ ଗୋପନରେ କହିଲେ, "ମଲୟକେତୁ ଓ ରାକ୍ଷସ ଭିତରେ ଥିବା ବନ୍ଧୁତାକୁ ଯେପରି ହେଲେ ଭାଙ୍ଗି ଦେବାକୁ ହେବ। ସେଥିପାଇଁ ଆମକୁ କୌମୁଦୀ ନାଟକ ରଚନା କରିବାକୁ ହେବ। ତୁମ ସହ ଯେପରି ମୋର କଳ ହୋଇ ବିଚ୍ଛେଦ ହୋଇଛି, ସେକଥା ପ୍ରକଟ କରି-ଦେବାକୁ ହେବ।

ଉଭୟେ କୌମୁଦୀ ଯୋଜନା ପ୍ରସ୍ତୁତ କଲେ। ଶରତ ଋତୁ ଆଗମନରେ କୌମୁଦୀ ଉତ୍ସବ ହୋଇଥାଏ। ସେ ବର୍ଷ ଉତ୍ସବ ବିଶେଷ ଭାବରେ ହେବ ବୋଲି ଘୋଷଣା କରାଗଲା। ପ୍ରଜାମାନେ ଏଥିରେ ଆନନ୍ଦିତ ହେଲେ ଓ ଉତ୍ସବ ପାଇଁ ପ୍ରସ୍ତୁତ ହେଲେ।





ନଗରୀ ବାହାରେ ଉତ୍ସବ ଉପଲକ୍ଷେ ଗୋଟିଏ ତୋରଣ ନିର୍ମାଣ ହେଉଥିଲା। ଚାଣକ୍ୟ ସେଠାରେ ପହଞ୍ଚି ଯାଇ କହିଲେ, "ଏ ତୋରଣର ପ୍ରୟୋଜନ ନାହିଁ। କିଏ କହିଲା ଉତ୍ସବ ହେବ? ଏ ବର୍ଷ ମୋଟେ ଉତ୍ସବ ହେବ ନାହିଁ। ଏହାହିଁ ମୋର ନିର୍ଦ୍ଦେଶ।"

ବିସ୍ମିତ କର୍ମଚାରୀମାନେ ଯାଇ ରାଜା ଚନ୍ଦ୍ରଗୁପ୍ତଙ୍କୁ ଏକଥା କହିଲେ। ରାଜା ଚାଣକ୍ୟଙ୍କୁ ଡକାଇ ପଠାଇ ସେ କିପରି ରାଜାଦେଶର ବିରୁଦ୍ଧାଚରଣ କରୁଛନ୍ତି, ସେକଥା ପଚାରିଲେ। ଚାଣକ୍ୟ ଜବାବ୍ ଦେଲେ କି ତେଣେ ମଳୟକେତୁ ଓ ରାକ୍ଷସ ମଗଧ ଆକ୍ରମଣ କରିବାକୁ ମସୁଧା କଲାବେଳେ ଉତ୍ସବର ଆୟୋଜନ ଅନୁଚିତ।





ଚାଣକ୍ୟ ଓ ଚନ୍ଦ୍ରଗୁପ୍ତ ପରସ୍ପର ଭୁମୁଳ ତର୍କର ଅଭିନୟ କଲେ। ହଠାତ୍ ଚନ୍ଦ୍ରଗୁପ୍ତ କହିଲେ, "ଆପଣଙ୍କଠୁଁ ରାକ୍ଷସ ଅଧିକ ଉତ୍ତମ ମନ୍ତ୍ରୀ!" ଚାଣକ୍ୟ ଭୀଷଣ ରାଗିଯିବାର ଛଳନା କରି କହିଲେ, "ଏହିକ୍ଷଣି ମୁଁ ମନ୍ତ୍ରୀତ୍ୱରୁ ଇସ୍ତଫା ଦେଲି।" ଏହାପରେ ସେ ତୀବ୍ର ଗତିରେ ବାହାରି ଚାଲିଗଲେ।

(କ୍ରମଶଃ)




# ଅସଲ କବିରାଜ

ପୁରୀଧାମରେ ସେତେବେଳେ ବିଶ୍ୱପତି ଆଚାର୍ଯ୍ୟ ନାମକ ଜଣେ ବିଶିଷ୍ଟ ବୈଦ୍ୟ ଥିଲେ । ତାଙ୍କର ଆୟୁର୍ବେଦ ଶାସ୍ତ୍ରରେ ଯେପରି ବ୍ୟୁତ୍ପତ୍ତି ଥିଲା, ପ୍ରତ୍ୟକ୍ଷ ଚିକିତ୍ସାରେ ବି ସେହିପରି ସୁନାମ ଥିଲା ।

ଅନେକ ଶିକ୍ଷାର୍ଥୀ ତାଙ୍କ ପାଖରେ ରହି ଆୟୁର୍ବେଦ ଶିକ୍ଷା କରିବାକୁ ଇଚ୍ଛା ପ୍ରକାଶ କରୁଥିଲେ । କିନ୍ତୁ ବୈଦ୍ୟରାଜ ବିଶ୍ୱପତି ଏକାବେଳେ ବେଶି ଶିକ୍ଷାର୍ଥିଙ୍କୁ ନିଜ ପାଖରେ ରଖୁ ନଥିଲେ । ଜଣେ ଦୁଇଜଣ କରି ରହିଲେ ସେମାନଙ୍କ ଶିକ୍ଷା ପ୍ରତି ଭଲ ଭାବରେ ଦୃଷ୍ଟି ଦେଇହେବ, ଏହାହିଁ ଥିଲା ତାଙ୍କର ଯଥାର୍ଥ ବିଶ୍ୱାସ ।

ଥରେ ବିମଳ ଓ ଚନ୍ଦ୍ରଭାନୁ ନାମକ ଦୁଇଜଣ ଯୁବକ ବାଲେଶ୍ୱରରୁ ଆସି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ବିଶ୍ୱପତି ଦେଖିଲେ ବିମଳ ଅତ୍ୟନ୍ତ ମେଧାବୀ । ସେ ଆୟୁର୍ବେଦ ଶାସ୍ତ୍ର ଗଭୀର ମନୋଯୋଗ ସହକାରେ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଗୁରୁଙ୍କ ସହିତ ଆୟୁର୍ବେଦ ଦର୍ଶନ ବିଷୟରେ ନାନା ତାତ୍ତ୍ୱିକ ଆଲୋଚନା କରୁଥାନ୍ତି ।

ସେତିକି ନୁହେଁ, ବିମଳ ରୋଗ ନିର୍ଣ୍ଣୟ କରିବାରେ ଓ ଔଷଧ ନିର୍ବାଚନ କରିବାରେ ମଧ୍ୟ ସିଦ୍ଧହସ୍ତ ବୋଲି ବୈଦ୍ୟରାଜ ବିଶ୍ୱପତି ବୁଝିପାରି ଆନନ୍ଦିତ ହେଲେ । ସର୍ବୋପରି, ବିମଳ ଅତ୍ୟନ୍ତ ସାଧୁ ଓ ସତ୍ ପ୍ରକୃତିର ଯୁବକ । ଏଭଳି ଶିକ୍ଷାର୍ଥୀ ଶହେକରେ ଜଣେ ମିଳନ୍ତି ନାହିଁ ।

ଚନ୍ଦ୍ରଭାନୁଙ୍କର ଶାସ୍ତ୍ର ଅଧ୍ୟୟନରେ ସେପରି ଆଗ୍ରହ ନଥାଏ । ସେ ଗୁରୁଙ୍କ ଚିକିତ୍ସା ପଦ୍ଧତି ଭଲ ଭାବରେ ଲକ୍ଷ୍ୟ କରୁଥାନ୍ତି ଓ ମୋଟାମୋଟି ଯେଉଁସବୁ ରୋଗରେ ଚିକିତ୍ସା କରିବା ସବୁଦିନ ଦରକାର ପଡ଼େ, ସେହିସବୁ ରୋଗର ନିଦାନ



ମୁଖସ୍ଥ କରୁଥାନ୍ତି । ବିଶ୍ୱପତି ବିମଳ ସମ୍ପର୍କରେ ଅତି ଉଚ୍ଚ ଆଶା ପୋଷଣ କରୁଥାନ୍ତି । ଦିନେ ବିମଳ ବିଖ୍ୟାତ କବିରାଜ ହେବେ ଓ ତାଙ୍କ ଟେକ ରଖିବେ, ତାଙ୍କ ମନରେ ଏ ବିଶ୍ୱାସ ଜନ୍ମ ହୋଇଥାଏ । ଚନ୍ଦ୍ରଭାନୁ କୌଣସି ମତେ କବିରାଜି କରି ଜୀବିକା ନିର୍ବାହ କରି ପାରିବେ, ଏଥିରେ ଅବଶ୍ୟ ତାଙ୍କର କୌଣସି ସନ୍ଦେହ ନଥିଲା ।

ବିଦ୍ୟାର୍ଜନ ଶେଷ କରି ଉଭୟ ଶିଷ୍ୟ ତାଙ୍କଠାରୁ ବିଦାୟ ନେଇ ବାଲେଶ୍ୱର ଲେଉଟି-ଗଲେ । ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ଆଜିକାଲି ଭଳି ବାଲେଶ୍ୱର ଓ ପୁରୀ ଭିତରେ ଘନ ଘନ ଯାତାୟାତ ବ୍ୟବସ୍ଥା ନଥିଲା ।

ପ୍ରଥମେ ବର୍ଷେ ଦୁଇବର୍ଷ ପର୍ଯ୍ୟନ୍ତ ଉଭୟ ଶିଷ୍ୟ ତୀର୍ଥ ପାଇଁ ବାଲେଶ୍ୱରରୁ ପୁରୀ ଆସୁଥିବା ଯାତ୍ରୀଙ୍କ ହାତରେ ଗୁରୁଙ୍କ ପାଖକୁ ଚିଠିପତ୍ର ଦେଉଥାନ୍ତି । ସେମାନେ ଭଲରେ ଅଛନ୍ତି ବୋଲି ଗୁରୁ ବୁଝୁଥାନ୍ତି । କ୍ରମେ ଚିଠିପତ୍ର ବନ୍ଦ ହୋଇଗଲା । ତାହାହିଁ ହୋଇଥାଏ ।

ତିନି ଚାରିବର୍ଷ ବିତିଗଲା । ଦିନେ ଜଣେ ବଣିକ ବାଲେଶ୍ୱରରୁ ତୀର୍ଥ କରିବାକୁ ପୁରୀ ଆସି ବେମାର ପଡିଲେ ଓ ବିଶ୍ୱପତି ଆଚାର୍ଯ୍ୟଙ୍କ ନିକଟକୁ ଚିକିତ୍ସା ପାଇଁ ଆସିଲେ । ବିଶ୍ୱପତି ତାଙ୍କ ଚିକିତ୍ସା ଭାର ନେଇ ତାଙ୍କୁ ପୁରାପୁରି ସୁସ୍ଥ କରିଦେଲେ । ସେ ବିଦାୟ ନେଇ ଯିବାବେଳେ ତାଙ୍କୁ କହିଲେ, "ଭବିଷ୍ୟତରେ ଯଦି କିଛି ସମସ୍ୟା ଦେଖାଦିଏ, ତେବେ କବିରାଜ ବିମଳ ମିଶ୍ରଙ୍କୁ ସବୁ କହିବେ । ସେ ମୋର ବିଶିଷ୍ଟ ଶିଷ୍ୟଙ୍କ ଭିତରେ ଜଣେ ।"

"ବିମଳ ମିଶ୍ରଙ୍କଠାରୁହିଁ ମୁଁ ଆପଣଙ୍କ ପ୍ରଶଂସା ଶୁଣିଥିଲି । କିନ୍ତୁ ତାଙ୍କ ସହ ପରାମର୍ଶ କରିବି କ'ଣ ? ସେ ତ କବିରାଜି ଛାଡି ଶିକ୍ଷକତା କରିବେ ବୋଲି କହୁଥିଲେ । କବିରାଜି ତାଙ୍କର ଭଲ ଜମିଲା ନାହିଁ ।" ବଣିକ କହିଲେ ।

"ଆପଣ ଠିକ୍ କହୁଛନ୍ତି ?" ବିଶ୍ୱପତି ନିଜ କାନକୁ ପରତେ ନଯାଇ ପଚାରିଲେ ।

"ଆଜ୍ଞା ହଁ । ଠିକ୍ କହୁଛି ।" ଭଦ୍ରଲୋକ କହିଲେ ।




ବିଶ୍ୱପତି ଅବାକ୍ ହୋଇଗଲେ ଓ ପଚାରିଲେ, "ଆଚ୍ଛା, ମୋର ଅନ୍ୟ ଶିଷ୍ୟ ଚନ୍ଦ୍ରଭାନୁ ଦାଶ କଥା କ'ଣ ?"

"ତାଙ୍କର ପ୍ରସାର ତ ବହୁତ । ବେଶ୍ ସଫଳ କବିରାଜ ସିଏ ।" ବଣିକ କହିଲେ ।

ବିଶ୍ୱପତିଙ୍କ ବିସ୍ମୟର ସୀମା ରହିଲା ନାହିଁ । ଅନେକଦିନ ହେଲା ତାଙ୍କର ଥରେ କ୍ଷୀର ଚୋରା ଗୋପୀନାଥଙ୍କ ଦର୍ଶନ ପାଇଁ ରେମୁଣା ଯିବାର ଇଚ୍ଛା ଥିଲା । ପର ସପ୍ତାହରେ ସେ ବାହାରି ପଡିଲେ ଓ ରେମୁଣା ଯିବା ବାଟରେ ପ୍ରଥମେ ବାଲେଶ୍ୱରରେ ପହଞ୍ଚିଲେ ।

ସେ ସିଧା ଯାଇ ପହଞ୍ଚିଲେ ବିମଳଙ୍କ ଘରେ । ସେତେବେଳେ ବିମଳ ଜଣେ ରୋଗୀକୁ ପରୀକ୍ଷା କରୁଥାନ୍ତି । ସେ ବାରନ୍ଦାରେ ଠିଆ ହୋଇ ଉଭୟଙ୍କ କଥାବାର୍ତ୍ତା ଶୁଣିଲେ । ବିମଳ ରୋଗୀକୁ କହୁଥାନ୍ତି, "ତମର ଯାହା ହୋଇଛି, ତାକୁ ରୋଗ କୁହାଯାଏ ? ତମେ ଦୁଇ ଚାରିଦିନ କପାଳରେ ହଳଦି ଲଗାଇ ଶୋଇବ । ସକାଳେ ଲେମ୍ବୁ ପାଣି ପିଇବ । ସବୁ ଠିକ୍ ହୋଇଯିବ ।"

ରୋଗୀ କିଛି ନ କହି ବାହାରି ଆସି ବିଶ୍ୱପତିଙ୍କ ଆଡ଼େ ଅନାଇ ନିଜ ବିରକ୍ତି ପ୍ରକାଶ କରି କହିଲା, "ଅସୁସ୍ଥ ଅବସ୍ଥାରେ ଦୁଇ କୋଶ ବାଟ ଚାଲି ଚାଲି ଆସିବା ବୃଥା ହେଲା । ମୋ ବୁଢ଼ୀ ଜେଜେମା ଯାହା କହିଥିଲା, ଇଏ ସେଇଆ କହିଲେ । ଇଏ ପୁଣି କୁଆଡ଼େ ପ୍ରସିଦ୍ଧ ବିଶ୍ୱପତି ଆଚାର୍ଯ୍ୟଙ୍କଠି ପାଞ୍ଚବର୍ଷ କାଳ ପାଠ ପଢିଛନ୍ତି !"

ବିଶ୍ୱପତି କିଛି ନ କହି ଘର ଭିତରକୁ ପଶିଗଲେ । ବିମଳ ଗୁରୁଙ୍କୁ ଦେଖି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ଆନନ୍ଦିତ ହେଲେ ଓ ପ୍ରଣାମ କରି ଗୁରୁ ରେମୁଣା ଯାଉଥିବା କଥା ଶୁଣିଲେ । ଗୁରୁ ଚନ୍ଦ୍ରଭାନୁ ସହ ଦେଖା କରିବାକୁ ଚାହିଁବାରୁ ବିମଳ ଗୁରୁଙ୍କୁ ବାଟ ଦେଖାଇ ନେଇଗଲେ ।

ଦେଖିବା ବେଳକୁ ଚନ୍ଦ୍ରଭାନୁ ଘର ପିଣ୍ଡାରେ ଦୁଇ ଚାରିଜଣ ରୋଗୀ ବସିଛନ୍ତି । କେତେଜଣ ପରୀକ୍ଷା କରାଇ ସାରିଲେଣି । ଚନ୍ଦ୍ରଭାନୁଙ୍କ ସହକାରୀ ଔଷଧ ତିଆରି କରୁଥାନ୍ତି ବୋଲି ସେମାନେ ଅପେକ୍ଷା କରିଥାନ୍ତି । ଘର ଭିତରେ ବିମଳ ପାଖରୁ ବିରକ୍ତ ହୋଇ ଲେଉଟି ଆସିଥିବା ରୋଗୀଟି ସହ ଚନ୍ଦ୍ରଭାନୁ କଥାବାର୍ତ୍ତା କରୁଥାନ୍ତି ।

ବନ୍ଧୁ ଜଣକୁ କହୁଥାନ୍ତି, "ରୋଗ ଭଲ ଡରିବାର କାରଣ ନାହିଁ । ଠିକ୍ ସମୟରେ ଚିକିତ୍ସା ଆରମ୍ଭ ହୋଇଥିଲେ ଏ ରୋଗ ବଢ଼ିବାର କଥା ନାହିଁ । କଥାରେ ଅଛି ଗୋଟିଏ ବେମାରକୁ ବଡ଼ ବେମାରର ବାଧା । ତେବେ ଏଥି ଭିତରେ ବଡ଼ ବେମାର କରାଇଦେବ ନାହିଁ । କଷ୍ଟ ତ ହେବ । ଆଚ୍ଛା, ଜର କମ ହେଉଛି ? ଭୁଖ୍ ଲାଗୁଛି ନା ନାହିଁ ?"

ବାହାରେ ଠିଆ ହୋଇ ବିମଳ ଶୁଣିଲା ଓ କହିଲା, "ଗୁରୁଦେବ, ତାଙ୍କୁ ଯାହା ହୋଇଛି, ତାହା ସହ ଜ୍ୱରର ସମ୍ପର୍କ କ'ଣ ?"

"ବାପା ! ଜ୍ୱରର ସମ୍ପର୍କ ନାହିଁ କି ଛୋଟ ବେମାରରୁ ବଡ଼ ବେମାର ହୁଏ, ଏ କଥାର ବି ସମ୍ପର୍କ ନାହିଁ । କିନ୍ତୁ ଆଉ ଗୋଟାଏ ଦୃଷ୍ଟିକୋଣରୁ ଦେଖିଲେ ବହୁତ ସମ୍ପର୍କ ଅଛି ।" ଗୁରୁ କହିଲେ ।

"କିପରି ?" ପଚାରିଲେ ବିମଳ ।

"ଛୋଟ ବେମାରରୁ ବଡ଼ ବେମାର ହୋଇ ଯାଏ, ଏହା ତ ଅସତ୍ୟ ନୁହେଁ ? ରୋଗୀ ସହ ଏଭଳି କଥାବାର୍ତ୍ତା କରିବା ଫଳରେ ସେ ତା' ମନରେ ବିଶ୍ୱାସ ଉପୁଜାଇଛୁ । ବିଚରା ଦୁଇକୋଶ ଦୂରରୁ ଆସିଛି । ସେଥିରେ ଯଥାର୍ଥ ଚିକିତ୍ସା ଦରକାର ବୋଲି ତା'ର ବଦ୍ଧମୂଳ ଧାରଣା । ସେଥି ତାଙ୍କୁ ଦୁଇ ଚାରିଟା ପ୍ରଶ୍ନ ନ ପଚାରିଲେ ଚଳିବ ?" ଗୁରୁ କହିଲେ ।

"କିନ୍ତୁ ରୋଗ କ'ଣ ଜାଣିବା ପରେ ବି ପ୍ରଶ୍ନ ପଚାରିବା ଦରକାର ?" ବିମଳ ପଚାରିଲେ ।

"ହଁ, ଦରକାର । ପ୍ରଥମ କଥା, ତାହା ଦ୍ୱାରା ରୋଗୀର ବିଶ୍ୱାସ ହୁଏ ଯେ ତମେ ତା'ର ସବୁକଥା ଶୁଣିଛ ଓ ବୁଝିଛ । ତମେ ପ୍ରଥମ ଦୃଷ୍ଟିରେହିଁ ତା' ରୋଗ ବୁଝିଥାଇପାର, କିନ୍ତୁ ତମେ ବୁଝିଛ ବୋଲି ଯଦି ତା'ର ବିଶ୍ୱାସ ନହେବ, ତେବେ ତମ ଚିକିତ୍ସା ଯେତେ ଖାଣ୍ଟି ହେଲେ ବି ସେ ଉପକାର ପାଇବ କମ । ମନେରଖ, ବିଶ୍ୱାସହିଁ ଅସଲ କବିରାଜ, ତମେ ନୁହେଁ କି ତମ ବିଦ୍ୟା ନୁହେଁ ।"






ଧନୁ ଭାଙ୍ଗିବା ପରେ କୃଷ୍ଣ ବଳରାମ ସେଠାରୁ ଅନ୍ୟତ୍ର ଗଲେ । ମହା କୋଳାହଳ ହେଲା । ଜନତା ଏକଜୁଟ ହୋଇ ପାର୍ଶ୍ୱସ୍ଥ ଶସ୍ତ୍ରାଗାର ମଧ୍ୟରେ ପଶିଲେ । କିନ୍ତୁ ରାଜ-କର୍ମଚାରୀମାନେ ସେମାନଙ୍କୁ ବାହାର କରି ଦେଇ କବାଟ ବନ୍ଦ କଲେ ଓ ରାଜାଙ୍କୁ ଖବର ଦେବାକୁ ଅଗ୍ରସର ହେଲେ ।

ଖବର ପାଇ କଂସ ଗଭୀର ଚିନ୍ତାରେ ମଗ୍ନ ହେଲା । ତା'ପରେ ସେ ଧନୁଉତ୍ସବ ପାଇଁ ସଜା ହୋଇଥିବା ମଣ୍ଡପ ଓ ମହଲ ଦେଖିବାକୁ ଗଲା । ନାନା ଶିଳ୍ପ ଓ ମୂଲ୍ୟବାନ୍ ରଙ୍ଗବେରଙ୍ଗର ବସ୍ତ୍ର ଦ୍ୱାରା ଓ ଫୁଲ ଦ୍ୱାରା ତୋରଣ ଓ ମଣ୍ଡପ ସବୁ ସଜା ହୋଇଥାଏ । ଏସବୁ ଦେଖିସାରି କଂସ ନିଜ ମହଲକୁ ଫେରିଗଲା । ସେଠାକୁ ତା'ର ଦୁଇ ଶ୍ରେଷ୍ଠ ମଲ୍ଲଯୋଦ୍ଧାଙ୍କୁ ଡକାଇ କହିଲା, "ଶୁଣ, ତୁମେ ଦୁହେଁ ମଲ୍ଲଯୁଦ୍ଧରେ ସାରା ପୃଥିବୀରେ ଶ୍ରେଷ୍ଠ । ବଳରାମ ଓ କୃଷ୍ଣ ଦୁଇଭାଇଙ୍କ କଥା ତ ଶୁଣିଛ । ବଣରେ ବୁଲୁଥିବା ଏହି ଦୁଇଜଣଙ୍କର କିଛି ଶକ୍ତି ନାହିଁ । କିନ୍ତୁ ତୁମ ନିକଟକୁ ସେମାନେ ଆସିବାବେଳେ ତମେମାନେ ବିନା ଦ୍ୱିଧାରେ ଓ ଡେରି ନ କରି ତାଙ୍କୁ ମାରିଦେବ ।"

"ମହାରାଜ ! ଦୁଇଟା ସାମାନ୍ୟ ବାଳକଙ୍କୁ ମାରିବା ନିମନ୍ତେ ଆମ୍ଭମାନଙ୍କୁ ପ୍ରୟୋଗ କରିବାର ଆବଶ୍ୟକ କ'ଣ ? ଆମ୍ଭେମାନେ ସିନା ବଡ଼ ବଡ଼ ବୀରମାନଙ୍କୁ ପରାସ୍ତ କରି ଆପଣଙ୍କ ଠେକ ରଖିବା କଥା ! ଯେଉଁ କାମ କରିବାକୁ ଆପଣ କହୁଛନ୍ତି, ତାହା ତ ଆମର ଯେ କୌଣସି ଜଣେ

୧୧. କଂସ ବଧ



ଶିଷ୍ୟ କରିପାରିବ !" ଦୁଇ ମଲ୍ଲଯୋଦ୍ଧା କହିଲେ ।

କଂସ ଏହା ଶୁଣି ଟିକିଏ ଅପ୍ରତିଭ ହେଲା । ତା'ପରେ କହିଲା, "କଥା କ'ଣ କି, ବଣରେ ବୁଲିବୁଲି କରି ସେ ଟୋକା ଦୁଇଟା କେତେ ଅଜଣା ଫଳମୂଳ ଖାଇ ସେମାନଙ୍କ ବୟସ ତୁଳନାରେ ଅଧିକ ବଳବାନ ହୋଇ ଯାଇଛନ୍ତି ବୋଲି ମୋର ଧାରଣା । ତମର ଶିଷ୍ୟମାନେ କାଳେ ସେମାନଙ୍କୁ କାବୁ କରିପାରିବେ ନାହିଁ, ଏ ଆଶଙ୍କା ରହିଛି ।"

ରାଜାଙ୍କ କଥା ଶୁଣି ଦୁଇଜଣ ମହା ଖୁସି ହୋଇ କହିଲେ, "ମହାରାଜ, ଛାର ଦୁଇଟା ଟୋକା ଆମ ହାତରୁ ଖସିଯିବେ ? ପାଖକୁ ଆସିବା ମାତ୍ରେ ତାଙ୍କୁ ମାରି ଫୋପାଡି ଦେବୁ । ଆମ ପାଇଁ ଏଇଟା କେଉଁ ଏକ ବଡ଼ କାମ ଯେ ? ଆପଣ ଦେଖନ୍ତୁ କ'ଣ ହେଉଛି ।" ଏତକ କହି ସେମାନେ ନିଜ ନିଜ ଘରକୁ ଫେରିଗଲେ ।

ସେମାନେ ଯିବା ପରେ ମଧ୍ୟ କଂସ ଶାନ୍ତିରେ ରହିପାରିଲା ନାହିଁ । କାରଣ ତା'ର ମନେ ପଡ଼ିଲା କୃଷ୍ଣଙ୍କୁ ମାରିବା ପାଇଁ ଯେତେ ବଡ଼ ବଡ଼ ରାକ୍ଷସମାନଙ୍କୁ ସେ ପଠାଇଥିଲା ସମସ୍ତେ ମରିଛନ୍ତି । ପୁଣି ତା'ର ମନ ଅସ୍ଥିର ହେଲା । କୁବଳୟା ହାତୀ କଥା ହଠାତ୍ ତା'ର ମନେ ପଡ଼ିଲା । ପୁଣି ମହାମାତ୍ର ନାମକ ଏକ ରାକ୍ଷସକୁ ସେ ଡକାଇ କହିଲା, "ତୁ ମୋର ଘନିଷ୍ଠ ମିତ୍ର ପରି । ବସୁଦେବ ପୁତ୍ରଦ୍ୱୟ ଖୁବ୍ ଦୁଷ୍ଟ ଓ ବଳବାନ୍ ମଧ୍ୟ । କାଲି ସେମାନେ ରାଜମହଲରେ ପ୍ରବେଶ କରିବା ପୂର୍ବରୁ ତୁ କୁବଳୟା ହାତୀକୁ ନେଇ ରାଜଦ୍ୱାରରେ ଥିବୁ । ସେମାନେ ପ୍ରବେଶ କରିବାକୁ ଚେଷ୍ଟା କରିବା ମାତ୍ରେ ତାଙ୍କ ଉପରେ ହାତୀ ଚଲାଇ ନେବୁ ।"

"ହାଃ ହାଃ ମହାରାଜ ! ଏହା ବେଶ ମଜାର କଥା ହେବ । କେତେଦିନ ହେଲା ହାତୀଙ୍କୁ ଏଭଳି କୌଣସି କାମରେ ଆମେ ଲଗାଇ ନାହୁଁ ।" ମହାମାତ୍ର କହିଲା ।

"କିନ୍ତୁ କାମଟି ସାବଧାନରେ କରିବାକୁ ହେବ । ସେ ପିଲା ଦୁଇଟି ଆତ୍ମରକ୍ଷାର ଅନେକ କୌଶଳ ଶିଖିଛନ୍ତି ବୋଲି ମୁଁ ଶୁଣିଛି । ତୁ

ଏହାକୁ ଅତି ସାଧାରଣ ବା ସହଜ କାମ ବୋଲି ଭାବିବା ଠିକ୍ ହେବ ନାହିଁ ।” କଂସ ସତର୍କ କରାଇ କହିଲା ।

“ଯେ ଆଜ୍ଞା ମହାରାଜ” କହିଲା ମହାମାତ୍ର ।

ସେଠାରୁ ମହାମାତ୍ର ଘରକୁ ଯାଇ ଆଗାମୀ କାଲିର ଯୁଦ୍ଧ ପାଇଁ ନିଜର ଭୟଙ୍କର ହାତୀ କୁବଳୟାକୁ ନାନା ଭାବରେ ଶିକ୍ଷା ଦେଲା ଓ ବହୁତ ମଦ୍ୟ ମଧ୍ଯ ତାକୁ ପାନ କରିବାକୁ ଦେଲା । କାରଣ ତଦ୍ଵାରା ହାତୀର ଉନ୍ମାଦ ଅବସ୍ଥା ଆସିଲେ ସେ ଅଧିକ ଜୋରରେ ଯୁଦ୍ଧ କରିପାରିବ ।

ପରଦିନ ଧନୁ ଉତ୍ସବ ପାଇଁ ସଜ୍ଜିତ ସ୍ଥାନକୁ ସମସ୍ତେ ଆସି ନିଜ ନିଜ ଆସନ ଗ୍ରହଣ କଲେ ଓ କୃଷ୍ଣ ବଳରାମଙ୍କୁ ପ୍ରତୀକ୍ଷା କରି ରହିଲେ । କଂସ ଏକ ଉଚ୍ଚ ମଣ୍ଡପ ଉପରେ ଥିବା ସୁବର୍ଣ୍ଣ ଆସନ ଉପରେ ସଜ୍ଜିତ ହୋଇ ବସିଥାଏ । ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଚାଣୁର ଓ ମୁଷ୍ଟିକ ଦୁହେଁ ରଙ୍ଗ ସ୍ଥଳୀରେ ପ୍ରବେଶ କଲେ । ମହାମାତ୍ର କୁବଳୟା ଉପରେ ବସି ମୁଖ୍ୟ ଦ୍ଵାର ପାଖରେ କୃଷ୍ଣ ବଳରାମଙ୍କୁ ଅପେକ୍ଷା କରିଥାଏ ।

କିଛି ସମୟ ପରେ କୃଷ୍ଣ ବଳରାମ ଆସି ମୁଖ୍ୟ ପ୍ରବେଶ ଦ୍ଵାରର ସମୀପରେ ପହଞ୍ଚିଲେ । ସଭାରେ ଉପସ୍ଥିତ ବ୍ୟକ୍ତିଗଣ ଅତ୍ୟନ୍ତ ଆଶ୍ଚର୍ଯ୍ୟ, କୌତୂହଳ ଓ କେତେକ ମଧ୍ଯ ସ୍ନେହ ସହ ଦୁଇଭାଇଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । ସମସ୍ତେ ନାନା ପ୍ରକାରରେ ଧ୍ଵନି କଲେ ଓ ବାଦ୍ୟବୃନ୍ଦ ମଧ୍ଯ ଅଧିକ ଜୋର୍‌ରେ ବାଜି ଉଠିଲେ । ସେହି





କୋଳାହଳ ମଧ୍ୟରେ ମହାମାତ୍ର କୁବଳୟା ହାତୀକୁ କୃଷ୍ଣଙ୍କ ଉପରକୁ ମାଡ଼ିଯିବାକୁ ସଙ୍କେତ ଦେଲା।

ଏସବୁ ଦୂରରୁ ଦେଖି କୃଷ୍ଣ ବଳରାମଙ୍କୁ କହିଲେ, "ଭାଇ, ଦେଖ କଂସ କପଟର ଆମକୁ ମାରିବା ପାଇଁ ମତ୍ତହସ୍ତୀକୁ ପ୍ରବେଶ ପଥରେହିଁ ରଖିଛି। ବିଚରା ଜାଣେନାହିଁ ଆଜି ତାହାର ଶେଷଦିନ। ଏବେ ତମେ ମୋର ଗତିବିଧି ସାବଧାନତା ସହ ନିରୀକ୍ଷଣ କର।" ଏତିକି କହି ସେ ଆଗକୁ ଗଲେ।

ପ୍ରଥମେ ଲୋକଙ୍କର କୌତୁହଳ ବଢ଼ାଇବାକୁ ସେ ହାତୀ ସହିତ ନାନା ପ୍ରକାର ଖେଳ ଖେଳିଲେ। ହାତୀ ପ୍ରଥମେ ଦୌଡ଼ି ଆସି କୃଷ୍ଣଙ୍କ ଉପରେ ଶୁଣ୍ଢ ପ୍ରହାର କଲା। କୃଷ୍ଣ ଅଳ୍ପ ହସି ସେଇ ଶୁଣ୍ଢକୁ ଧରି ହାତୀ ଉପରକୁ ଚଢ଼ିଯାଇ ତା'ର ଦାନ୍ତ ଉପରେ ଛିଡ଼ା ହୋଇ ଅଳ୍ପ ଅଳ୍ପ ହସିଲେ। ତା'ପରେ ପୁଣି ହାତୀ ଶୁଣ୍ଢରେ ତଳକୁ ଆସି ହାତୀ ପେଟତଳେ ପଶି ଏପଟରୁ ସେପଟକୁ ଯାଉ ଥାଆ'ନ୍ତି। ବିଚରା ହାତୀ ଘୂରି ଘୂରି ତାଙ୍କୁ ଦେଖିବାକୁ ଚେଷ୍ଟା କରୁଥାଏ। ସେ ଘୂରି ଘୂରି ଶେଷକୁ ହାତୀର ଲାଞ୍ଜ ଧରି ତାକୁ ପଛକୁ ଘୋଷାଡ଼ି ନେଲେ। ହାତୀ ରାଗି ଗଲା। କୃଷ୍ଣ ଓ ହାତୀ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା। ଶେଷକୁ ହାତୀର ଦାନ୍ତ ଉପାଡ଼ି ସେଇଥିରେ ତା'କୁ ବାଡ଼େଇ ମାରିଲେ ଓ ତା'ର ମାହୁନ୍ତକୁ ମଧ୍ୟ ମାରିଲେ।

ରକ୍ତାକ୍ତ ଦାନ୍ତକୁ ଧରି କୃଷ୍ଣ ସଭାସ୍ଥଳୀରେ ପ୍ରବେଶ କଲେ। ସେଠାରେ ଚାଣୁର କୃଷ୍ଣଙ୍କ ସହିତ ମଲ୍ଲଯୁଦ୍ଧ କରିବାକୁ ପ୍ରସ୍ତୁତ ଥିଲା। ମୁଷ୍ଟିକ ମଧ୍ୟ ବଳରାମଙ୍କ ଆଡ଼େ ମାଡ଼ି ଆସିଲା।

କୃଷ୍ଣ ବଳରାମ ସତେ ଅବା କିଛି ହୋଇନାହିଁ, ସାମାନ୍ୟ କିଛି ବାଧା ଅତିକ୍ରମ କରି ଦୁହେଁ ଭିତରକୁ ଆସୁଛନ୍ତି, ଏହିପରି ମନୋଭାବ ଦେଖାଇ ସଭା ଭିତରକୁ ପ୍ରବେଶ କରୁଥାନ୍ତି। ଚାଣୁର ଓ ମୁଷ୍ଟିକ କିନ୍ତୁ ନିଜ ନିଜ ମାଂସପେଶୀ ଦେଖାଇ, ବିକଟ ହସ ହସି ସେମାନଙ୍କୁ ସାମ୍ନା କଲେ।

ଚାଣୁର କୃଷ୍ଣଙ୍କୁ ଯୁଦ୍ଧକୁ ଆହ୍ୱାନ କରୁ କରୁ କହିଲା, "ଦୁଇଜଣ ଗାଈରଖା ଟୋକା ବହୁତ



ଖ୍ୟାତି ଅର୍ଜିଛ ଶୁଣିଲି । ଆଜି ତୁମର ଅନ୍ତିମ ଯୁଦ୍ଧ । ମୁଁ ତା'ପରେ ତୁମକୁ କାଳ ହାତରେ ସମର୍ପଣ କରିବି ।"

ଅଳ୍ପ ହସି କୃଷ୍ଣ କଣ୍ଠସ୍ୱର ନମ୍ର କରି ସେ ମଲ୍ଲଯୋଦ୍ଧାକୁ କହିଲେ, "ବିଚରା ମୂଢ଼ କଂସ ତୁମମାନଙ୍କ ଉପରେ କି ବିଶ୍ୱାସ ଆସ୍ଥା ରଖି ବସିଛି । ସେଥିପାଇଁ ସାରା ଶକ୍ତି ଓ କୌଶଳ ଖଟାଇ ମୋ ସହିତ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଆସିଛ ?"

ତା'ପରେ ଦୁହିଁଙ୍କର ଘୋର ଯୁଦ୍ଧ ହେଲା । ଏକ ପକ୍ଷରେ ପର୍ବତ ପରି ବିଶାଳକାୟ ଚାଣୂର । ଅନ୍ୟ ପକ୍ଷରେ କୋମଳମତି ବାଳକ କୃଷ୍ଣ । ଯାଦବମାନେ ବ୍ୟସ୍ତ ହୋଇ ପଡିଲେ, କହିଲେ, "ଏ ତ ଘୋର ଅନ୍ୟାୟ । ପାଖରେ ମଧ୍ୟ ସାହାଯ୍ୟ କରିବାକୁ କେହି ନାହାନ୍ତି । ଏଠାରେ ତ ମନୋରଞ୍ଜନ କାର୍ଯ୍ୟକ୍ରମ ହେଉଛି । କିନ୍ତୁ ଅସହାୟ ଭାବରେ ଅତିଥି ରୂପେ ଆସିଥିବା ଏତେ ଛୋଟ ବାଳକ ସହିତ ଭୟଙ୍କର ମଲ୍ଲଙ୍କୁ କିପରି ଯୁଦ୍ଧ କରିବାକୁ ଦିଆଯାଇଛି ? ଏବେ ଯେତିକି ହେଲାଣି ଯଥେଷ୍ଟ । ରାଜାଙ୍କୁ କହି ମଲ୍ଲଯୁଦ୍ଧ ବନ୍ଦ କରି ଦିଆଯାଉ ଓ ସେମାନଙ୍କର ଉପଯୁକ୍ତ ସତ୍କାର କରାଯାଉ ।"

ଯାଦବମାନଙ୍କ ଭିତରେ କ୍ରମେ ଉଦ୍‌ବେଗ ଓ କୋଳାହଳ ବଢିବାକୁ ଲାଗିଲା । ସେମାନେ ବୁଝିଲେ ଯେ କଂସ ଜାଣିଶୁଣି କୃଷ୍ଣ ବଳରାମଙ୍କୁ ନିଧନ କରିବା ନିମନ୍ତେ ଏଭଳି ବଳବାନ୍ ମଲ୍ଲଯୋଦ୍ଧାମାନଙ୍କୁ ନିଯୁକ୍ତ କରିଛି । ସେମାନେ କିପରି ନୀରବରେ ବସି ରହି ଏ ଭୟଙ୍କର ଅନ୍ୟାୟ ସହନ କରିବେ ? କିନ୍ତୁ କରିବେ ବା କ'ଣ ?

କୃଷ୍ଣଙ୍କ କାନରେ ସେମାନଙ୍କ କୋଳାହଳ ପଡିଲା ।

କୃଷ୍ଣ ଅଳ୍ପ ହସି ଯାଦବଙ୍କୁ କହିଲେ, "ଆପଣମାନେ ଚୁପ୍‌ଚାପ୍ ବସି ଯୁଦ୍ଧ ଦେଖନ୍ତୁ । ମନୋବଳ, ପରାକ୍ରମ, ସହନଶୀଳତା, ଉତ୍ସାହ ଓ ବିଜୟର ପ୍ରଦର୍ଶନ କରିବାରେ ବୟସର କମ୍ ବେଶିର ପ୍ରଶ୍ନ ନାହିଁ । ଚାଣୂର ଜୀବନରେ ଅନେକ ଯୋଦ୍ଧା ହରାଇ ବହୁ ଖ୍ୟାତି ଅର୍ଜନ କରିଛି । ଏବେ ମୁଁ ତାକୁ ମାରି ଖ୍ୟାତି ଅର୍ଜନ କରିବି ।"



ପୁଣି ମଲ୍ଲଯୁଦ୍ଧ ଚାଲିଲା । କୃଷ୍ଣ ଓ ଚାଣୁର ପରସ୍ପରକୁ ହରାଇବା ପାଇଁ ନାନା ପ୍ରକାର କୌଶଳ ଦେଖାଉଥା'ନ୍ତି । ବହୁ ସମୟ ଘୋର ମଲ୍ଲଯୁଦ୍ଧ ଚାଲିବା ପରେ କୃଷ୍ଣଙ୍କର ଏକ ଭୟଙ୍କର ମୁଷ୍ଟିକା ପ୍ରହାର ଯୋଗୁ ରକ୍ତବାନ୍ତି କରି ଚାଣୁରର ମୃତ୍ୟୁ ହେଲା । ଇତିମଧ୍ୟରେ ବଳରାମ ମଧ୍ୟ ମୁଷ୍ଟିକ ସହିତ ବହୁତ ଯୁଦ୍ଧ କରି ତାକୁ ମାରିଦେଲେ । ଦୁଇଭାଇଙ୍କର ବିଜୟ ଦେଖି କଂସ ମୁହଁରେ ଭୟ ଓ କ୍ରୂରତା ଏତେ ଭୟଙ୍କର ଭାବରେ ପ୍ରକାଶିତ ହେଲା ଯେ ଯାଦବମାନେ ଭୟରେ କମ୍ପି ଉଠିଲେ ।

ଏକଥା ଶୁଣି ଦେବକୀ ମଧ୍ୟ ବହୁତ ଦୁଃଖ କଲେ । ପ୍ରଥମେ କୃଷ୍ଣର ଖବର ଶୁଣି ଅତ୍ୟନ୍ତ ଖୁସି ହୋଇଥିଲେ । କିନ୍ତୁ କଂସ ଯେ ତାକୁ ମାରିଦେବା ନିମନ୍ତେ ଚେଷ୍ଟା କରୁଛି, ସେ କଥାରେ ତାଙ୍କ ହୃଦୟ ଶତଧା ବିଦୀର୍ଣ୍ଣ ହେଲା । ସାତଟି ପୁଅର ମୃତ୍ୟୁ କଷ୍ଟ ପରେ ଗୋଟିଏ ମାତ୍ର ପୁତ୍ର ବଞ୍ଚିଛି । ସିଏ ପୁଣି ଏତେ ଦିନ ପରେ ଆସିଛି । କମିତି ମା' ହୋଇ ସେ ଏତେ କଷ୍ଟ ସହିବେ ? ଦୁଃଖରେ ଭାଙ୍ଗି ପଡିଲେ ସେ । ମନେ ମନେ ଅନେକ ଦେବତାଙ୍କୁ ପ୍ରାର୍ଥନା କଲେ କୃଷ୍ଣଙ୍କର ଦୀର୍ଘଜୀବନ କାମନା କରି ।

ଏଣେ କଂସ କ୍ରୋଧରେ ଜଳୁଥାଏ, ଭୟରେ ବିବ୍ରତ ହେଉଥାଏ । ତା'ପରେ ସେ ତା'ର ଚାରିଜଣ ବିଶ୍ୱସ୍ତ ଅନୁଚରଙ୍କୁ ଡାକି କହିଲା, "ଦେଖ, କୃଷ୍ଣ ଓ ବଳରାମ ମଥୁରାକୁ ଆସି ବହୁତ ଅତ୍ୟାଚାର କଲେଣି । ଏବେ ତାଙ୍କର ଶେଷ ସମୟ ଉପସ୍ଥିତ । ତୁମେମାନେ ନନ୍ଦ ସହିତରେ ଅନ୍ୟାନ୍ୟ ଗୋପପୁରବାସୀଙ୍କର ଶିରଚ୍ଛେଦ କର । ଦୁଇଭାଇକୁ ମୃତ୍ୟୁଦଣ୍ଡ ଦିଅ ।"

କଂସର ଏ କ୍ରୂର ଆଦେଶ ଶୁଣି ଦେବକୀ ମୂର୍ଚ୍ଛିତ ହେଲେ । ସେବକମାନେ କୃଷ୍ଣଙ୍କର ବଳବୀର୍ଯ୍ୟ ଦେଖି ଏତେ ଚକିତ ଓ ଭୟଭୀତ ହୋଇଥିଲେ ଯେ ସେମାନେ କ'ଣ କରିବେ ଭାବି ଭାବି ବ୍ୟସ୍ତ ହୋଇ ପଡୁଥିଲେ । ମୁହଁ ତାଙ୍କର ବିକଳ ହୋଇଗଲା । ଏପରି ଅବସ୍ଥା ଦେଖି ସ୍ୱୟଂ କୃଷ୍ଣ ତତ୍ପର କୁଦାମାରି କଂସ ବସିଥିବା ମଞ୍ଚ ଉପରକୁ ଉଠିଲେ ।

ସମଗ୍ର ସଭା ମଧ୍ୟରେ ଭୟପୂର୍ଣ୍ଣ ନିସ୍ତବ୍ଧତା ବିରାଜମାନ କଲା । କେହି କଳ୍ପନା କରି ନଥିଲେ ଯେ କୃଷ୍ଣ ଏଡ଼େ ସାହସ ଦେଖାଇ ଖୋଦ୍ କଂସ ଆଗରେ ଯାଇ ଠିଆ ହୋଇଯିବେ । ଆଜି ପର୍ଯ୍ୟନ୍ତ କଂସକୁ ସାମ୍ନା କଲାଭଳି କାର ସମ୍ଭବ ହୋଇନଥିଲେ । କଂସ ଆଗରେ ସମସ୍ତେ ଭୟରେ କମ୍ପମାନ ହେଉଥାନ୍ତି । ଆଜି ଏଭଳି ଦୃଶ୍ୟ କପରି ସମ୍ଭବପର ହେଲା ? ଅନେକେ ନିଜ ନିଜ ଆଖିକୁ ବିଶ୍ୱାସ କରି-ପାରିଲେ ନାହିଁ ।

କଂସ ନିଜେ ମଧ୍ୟ ବିହ୍ୱଳ ଦେଖାଗଲା । ସେ କ୍ରୋଧାନ୍ଧ ହୁଙ୍କାର ଦେଇ ସିଂହାସନରୁ ଉଠି ଠିଆହୋଇ ପଡିଲା । କଂସର ସେଭଳି ବିକଟ ରୂପ ଦେଖି ଓ ସେ ବଜ୍ର ହୁଙ୍କାର ଶୁଣି ସଭାର ଅନେକ ଲୋକ ମୂର୍ଚ୍ଛା ଗଲେ । ଯାଦବମାନେ କୃଷ୍ଣଙ୍କ ନିରାପତ୍ତା ବିଷୟ ଚିନ୍ତାକରି ଆତଙ୍କିତ ଦେଖାଗଲେ । କିନ୍ତୁ କାହାରିକୁ ବେଶି ସମୟ ସନ୍ଦେହରେ ରହିବାକୁ ପଡିଲା ନାହିଁ ।

କଂସ କିଛି କରିବା ପୂର୍ବରୁ କୃଷ୍ଣ ତାହାର ମୁକୁଟକୁ ଗୋଟାଏ ଥାପଡ଼ରେ ପକାଇ ଦେଇ ନିଜେ ତା'ର ଚୁଟି ଧରି ମାରିଲେ ଏକ ବ୍ରହ୍ମ-ଗୁମୁଡ଼ା । ସେଥିରେ କଂସର ଆଖିକାନ ଓ ମୁହଁରୁ ରୁଧିର ବହିବାକୁ ଲାଗିଲା । ସେଇ ଅବସ୍ଥାରେ କୃଷ୍ଣ ତାକୁ ମଞ୍ଚ ଉପରୁ ତଳକୁ ପକାଇ ଦେଲେ । କଂସ କୃଷ୍ଣଙ୍କ ମୁହଁକୁ ଚାହିଁ ଜୀବନ ଛାଡିଲା ଓ ସିଧା ସ୍ୱର୍ଗକୁ ଗଲା । କଂସର ଅଗ୍ରୁନକ ମୃତ୍ୟୁରେ ସମସ୍ତେ ଜୟଧ୍ୱନି କଲେ ।

କୃଷ୍ଣ ସେହି ଅବସ୍ଥାରେହିଁ ପିତାମାତା ବସୁଦେବ ଓ ଦେବକୀଙ୍କ ପାଖକୁ ଯାଇ ସେମାନଙ୍କୁ ପ୍ରଣାମ କଲେ । ସାଥିରେ ବଳରାମ ଥିଲେ । ଏତେଦିନ ପରେ ଦେବକୀଙ୍କର ଭାଗ୍ୟ ଖୋଲିଲା । ଏ ମିଳନରେ ସମସ୍ତେ ଆନନ୍ଦ ପ୍ରକାଶ କଲେ । ଧନୁଉତ୍ସବ ହେବାର ଥିଲା । କିନ୍ତୁ ଏ ଉତ୍ସବ ସେ ଉତ୍ସବ ଅପେକ୍ଷା ଅନେକ ଭାବରେ ଶ୍ରେୟସ୍କର । କଂସର ମୃତ୍ୟୁରେ ସାରା ମଥୁରାରେ ଉତ୍ସବ ଲାଗି ରହିଲା ।






# ଠକ ଜ୍ୟୋତିଷ

କୌଣସି ଗୋଟିଏ ଗ୍ରାମରେ ଦୁଇଜଣ ବନ୍ଧୁ ଥା'ନ୍ତି । ଦୁହେଁ ଏକୁ ଆରେକ ବଳି ଅଳସୁଆ ଓ ଠକ । ଜଣକ ନାମ ବକ୍ରବୁଦ୍ଧି ; ଅନ୍ୟଟିର ନାମ ଦୁର୍ବୁଦ୍ଧି । ନିଜ ଗ୍ରାମରେ କେତେ ଆଉ ଠକ ଖାଇବେ । ଦିନେ ଦୁହେଁ ବିଚାର କରି ଠିକ୍ କଲେ କୌଣସି ଦୂର ରାଜ୍ୟକୁ ଯାଇ ନିଜର ବୁଦ୍ଧି ବଳରେ କିଛି ବ୍ୟବସ୍ଥା କରିବେ ।

ଦିନେ ନିଜ ଗ୍ରାମ ଛାଡି ଦୁହେଁ ଚାଲିଲେ । ସଂଧ୍ୟା ହେବା ପୂର୍ବରୁ ଗୋଟିଏ ଗ୍ରାମରେ ପହଞ୍ଚି ରହିବାକୁ ସ୍ଥିର କଲେ । ଗ୍ରାମକୁ ଯିବା ପୂର୍ବରୁ ଗ୍ରାମ ସୀମାନ୍ତରେ ଦେଖିଲେ ଏକଲା ବଳଦଟିଏ ପଡ଼ିଆରେ ଘାସ ଚରୁଛି । ସେମାନେ ଜାଣି-ନେଲେ ଯେ ବଳଦଟି ଘରୁ ଫିଟି ପଳାଇ ଆସିଛି । ଦୁହେଁ ବଳଦକୁ ନେଇ ଟିକିଏ ଦୂରା ଥିବା ସ୍ଥାନରେ ବାନ୍ଧିଦେଇ ଆସିଲେ । ତା'ପରେ ଗ୍ରାମ ଭିତରକୁ ଯାଇ ରାତିଟି ସେଠାରେ ରହିବା ପାଇଁ ଘରଟିଏ ବାଛିଲେ । ଇତିମଧ୍ୟରେ ବଳଦର ମାଲିକ ଗୃହଆଡ଼େ କହିସାରିଲାଣି କି ତା' ବଳଦ ହଜିଛି । ଦୁର୍ବୁଦ୍ଧି କିଛି ନ ଜାଣିଲା ପରି କହିଲା, "ଓଃ, ଇଏ ଗୋଟାଏ କଥା । ମୋ ଗୁରୁ ଜଣେ ବଡ଼ ଜ୍ୟୋତିଷ । ସେ ସଙ୍ଗେ ସଙ୍ଗେ କହିଦେବେ ।" ଏକଥା କହି ସେ ବଳଦ ମାଲିକ ଓ ଅନ୍ୟ କେତେଜଣ ଭଦ୍ରଲୋକଙ୍କୁ ନେଇ ବକ୍ରବୁଦ୍ଧି ପାଖକୁ ଗଲା । ବକ୍ରବୁଦ୍ଧି ସବୁ ଶୁଣି ମିଛରେ ଆଖିବୁଜି ଧାନ କଲା । ତା'ପରେ ଆଖି ଖୋଲି ବତାଇ ଦେଲା ଠିକ୍ ସ୍ଥାନ ଯେଉଁଠି ବଳଦ ମିଳିବ । ସେମାନେ ସେଠାକୁ ଯାଇ ବଳଦଟିକୁ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ ଓ ବକ୍ରବୁଦ୍ଧିକୁ ଜଣେ ମହାପୁରୁଷ ବୋଲି ଭାବିଲେ । ବଳଦର ମାଲିକ କିଛି ଟଙ୍କା ମଧ୍ୟ ଦେଲା ।

ବର୍ମାର ଲୋକକଥା



ଠକ ଦୁହେଁ ମହା ଖୁସି । ଧରା ପଡ଼ିବା ଭୟରେ ପରଦିନ ସକାଳୁ ସେ ଗ୍ରାମ ଛାଡ଼ି ଚାଲିଯିବାକୁ ବାହାରିଲେ: ସକାଳୁ ବାହାରିଛନ୍ତି ଗ୍ରାମର ମୁଖିଆ ଆସୁଥିବାର ସେମାନେ ଦେଖିଲେ । ଦୁହେଁ ଲୁହାଲୁହି ହେଲେ, "ଇଏ ପୁଣି କି ବିପଦ ଆସିଲାରେ ବାବା ।"

କିନ୍ତୁ ମୁଖିଆ ପାଖକୁ ଆସିବାରୁ ହସି ହସି ପଚାରିଲେ, "କାହିଁକି ଧାଇଁ ଆସିଛନ୍ତି ?"

"ମହାଶୟ, ମୋର ଭାଗ୍ୟ ଭଲ ଯେ ଆପଣମାନେ ଯିବା ପୂର୍ବରୁ ଦେଖା ମିଳିଗଲା, ମୋର ସୁନା ପାନବଟା କାଲିଠାରୁ ଚୋରି ହୋଇ ଯାଇଛି । ଆପଣ ଆଉ ଦିନକ ଅଟକି ଯାଆନ୍ତୁ ଆଉ ମୋତେ ଦୟାକରି ଜିନିଷଟିର ସନ୍ଧାନ ଦିଅନ୍ତୁ ।" ମୁଖିଆ ବଜ୍ରବୁଦ୍ଧି ପାଖରେ ହାତ ଯୋଡ଼ି କହିଲେ ।

"କିନ୍ତୁ ହାୟ, ଆଜିର ସମୟ ତ ବ୍ୟର୍ଥ ସମୟ । ଯାହା ଚେଷ୍ଟା କଲେ ବ୍ୟର୍ଥ ହେବ । କାଲି ସକାଳୁ ଆସନ୍ତୁ ମୁଁ କହିଦେବି ।" ବଜ୍ରବୁଦ୍ଧି ନିଜର ପ୍ରତ୍ୟୁତ୍ପନ୍ନମତି ଗୁଣରୁ କହି ପକାଇ ରକ୍ଷା ପାଇଲା ।

"ହେଉ, ଯାହା ଆପଣମାନଙ୍କ ଇଚ୍ଛା ।" କହି ମୁଖିଆ ଫେରିଗଲେ । ସେ ଗଲାପରେ ଦୁହେଁ ଠିକ୍ କଲେ କି ଅର୍ଦ୍ଧ ରାତିରେ ଚୁପ୍‌ଚାପ୍ ସେ ସ୍ଥାନରୁ ଚାଲିଯିବେ ।

ଏଣେ ମୁଖିଆ ଯାଇ ଘରେ କହିଲେ, "ଜ୍ୟୋତିଷ କହିଛନ୍ତି କାଲି ସୂର୍ଯ୍ୟୋଦୟ ବେଳକୁ ଚୋରର ନାମ କହିଦେବେ ଓ ଜିନିଷ କେଉଁଠି ଅଛି କହିଦେବେ । ଜାଣ ମୋ ବଟା ନିଶ୍ଚୟ ମିଳିଗଲା ।"

ମୁଖିଆଙ୍କର ଭଗିଆ ନାମକ ଚାକର ସେଇଟି ଚୋରେଇଥିଲା । ଏକଥା ଶୁଣି ତା' ପ୍ରାଣ ଭୟରେ ଥରହର ।

ରାତି ହେବାରୁ ସେ ଯାଇ ଜ୍ୟୋତିଷଙ୍କ ଘର ପଛପଟେ ଲୁଚି ଲୁଚି ତାଙ୍କ କଥା ଶୁଣୁଛି ।

ବଜ୍ରବୁଦ୍ଧି କହୁଥାଏ, "ବଳଦ କଥାରେ ତ ଟଙ୍କା ପାଇଲେ ଏବେ ରାତି ଅଧରେ ଲୁଚି ପଳାଇବାକୁ ମୋତେ ଭଲ ଲାଗୁନାହିଁ ।"

ତା'ପରେ ଦୁର୍ବୁଦ୍ଧି କହିଲା, "ଆମେ ସକାଳୁ ଯାଇଥିଲେ ତ କେତେ ଦୂର



ଯାଉଥା'ନ୍ତେ । ମୁଖିଆଙ୍କ ପାନବଟା ଚୋରି ଗଲାରୁ ସିନା ଆମେ ଏଠାରେ ରହିଲେ । ସବୁ ଭଗିଆର କାରସାଦି !" ଦୁର୍ବୁଦ୍ଧି ଭଗବାନ୍‌ଙ୍କୁ ଅତି ଆଦରରେ ଭଗିଆ ବୋଲି କହୁଥାଏ ।

ଏଣେ ଅସଲ ଭଗିଆର ହୃତକମ୍ପ । ନିଜ ନାମଟା ଶୁଣି ଛାନିଆ ହୋଇ ଯାଇ ବହୁବୁଦ୍ଧି ପାଦ ଧରି କାନ୍ଦି କାନ୍ଦି କହିଲା, "ଜ୍ୟୋତିଷ ମହାରାଜ, ମୋତେ ରକ୍ଷା କରନ୍ତୁ । ଆପଣ-ମାନେ ଯେଉଁ ଭଗିଆ କଥା କହିଲେ ମୁଁ ସେହି ହତଭାଗ୍ୟ । ଲୋଭରେ ପଡ଼ି ତ ଚୋରି କଲି । ଏବେ ମୁଖିଆ କାଲି ଜାଣିବା ମାତ୍ରେ ମୋତେ ପିଟି ପିଟି ମାରି ପକାଇବେ, ମୋ ସ୍ତ୍ରୀ ପିଲା ସଂସାର ଭାସିଯିବ ।" ବହୁବୁଦ୍ଧି ଗମ୍ଭୀର ହୋଇ ପଚାରିଲା, "ଜିନିଷଟା ଦେଲୁ କୁଆଡ଼େ ?"

"ମନ୍ଦିରଘରେ ଥିବା ବସ୍ତାମାନଙ୍କ ଭିତରେ ଲୁଚାଇ ରଖିଛି ଆଜ୍ଞା ।" ଭଗିଆ କହିଲା ।

"ହଉ ଯା' ଯା' ତୋ ଭାଗ୍ୟ ଭଲ ଆମକୁ ଭେଟିଲୁ ।" ବହୁବୁଦ୍ଧି କହିଲା । ଭଗିଆ ଦୁହିଁଙ୍କୁ ପ୍ରଣାମ କରି ସେଠାରୁ ବାହାରି ଗଲା ।

ତା' ପରଦିନ ସୂର୍ଯ୍ୟୋଦୟ ନ ହେଉଣୁ ମୁଖିଆ ଆସି ହାଜର । ବହୁବୁଦ୍ଧି ସଙ୍ଗେ ସଙ୍ଗେ ଆଖିବୁଜି ଧ୍ୟାନ କରି କହିଦେଲେ, "ଆପଣଙ୍କ ମନ୍ଦିରଘରେ ଥିବା ବସ୍ତାମାନଙ୍କ ଭିତରେ ଖୋଜନ୍ତୁ ।"

ମୁଖିଆ ସଙ୍ଗେ ସଙ୍ଗେ ଘରକୁ ଧାଇଁଲେ ଓ ଖୋଜାଖୋଜି କରି ଜିନିଷଟି ପାଇଲେ । ସେ ଖୁସିରେ ଦୁଇଶହ ଟଙ୍କା ଜ୍ୟୋତିଷଙ୍କୁ ଦେଲେ ଆଉ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ କରି ଆସିଲେ ।

ରାତିରେ ଦୁହେଁ ଆନନ୍ଦରେ ବସି ମୁଖିଆଙ୍କ ସହିତ ଭୋଜନ କରୁଥା'ନ୍ତି, ଏଇ ସମୟରେ ରାଜାଙ୍କ ନିକଟରୁ ଜଣେ ବ୍ୟକ୍ତି ଆସି ମୁଖିଆଙ୍କୁ ଏକ ଜରୁରୀ ଖବର ଦେଲା ।

ଖବରଟି ଏହି ପ୍ରକାରର—

କିଛିଦିନ ପୂର୍ବରୁ ସାତଟି ବିଦେଶୀ ଜାହାଜ ବାଣିଜ୍ୟ କରିବା ଉଦ୍ଦେଶ୍ୟରେ ଆସିଥା'ନ୍ତି । ସେ ସବୁଥିରେ ବହୁ ମୂଲ୍ୟବାନ୍ ଜିନିଷ ଥାଏ । ଜାହାଜମାନଙ୍କର ମାଲିକ ରାଜାଙ୍କ ସହିତ ଏକ ବାଜି ରଖିଛନ୍ତି । ସେ ଗୋଟିଏ ବନ୍ଦ ଥିବା




ବାକ୍ସ ରାଜାଙ୍କୁ ଦେଇ କହିଛନ୍ତି କି ଏହା ଭିତରେ କ'ଣ ଅଛି ସପ୍ତାହକ ମଧ୍ୟରେ କହିଦେଲେ ସେ ସବୁ ଜାହାଜ ଛାଡ଼ି ଚାଲିଯିବେ। ଯଦି କହି ନ ପାରିବେ ତେବେ ରାଜା ରାଜ୍ୟରୁ ଅଧେ ଦେବେ।

ରାଜା ଅନେକ ଜ୍ୟୋତିଷଙ୍କୁ ପଚାରି ବିଫଳ ମନୋରଥ ହୋଇ ଅଗତ୍ୟା ଶେଷ ଚେଷ୍ଟା କରିଛନ୍ତି ଏଠାରେ।

ରାଜା ନିଜର ରାଜ-ଜ୍ୟୋତିଷଙ୍କ ପାଖରୁ ନାସ୍ତିବାଣୀ ଶୁଣି ଅତ୍ୟନ୍ତ ହତାଶ ହୋଇ ମୋତେ ଏଠାକୁ ପଠାଇଛନ୍ତି।"

ମୁଖିଆ ବଙ୍କବୁଦ୍ଧିଙ୍କୁ କହିଲେ, "ଆପଣ-ମାନଙ୍କ ପରି ଜ୍ୟୋତିଷ ଥାଉ ଥାଉ ରାଜାଙ୍କର ଲଜ୍ଜା କେଉଁଥିପାଇଁ? ଚାଲନ୍ତୁ ରାଜାଙ୍କ ପାଖକୁ ଯିବା।" ଅଗତ୍ୟା ଦୁହେଁ ରାଜାଙ୍କ ପାଖକୁ ଗଲେ। ସେଠାରେ ସେମାନଙ୍କୁ ରଜୋଚିତ ସମ୍ମାନ ସହ ସ୍ୱାଗତ କରାଗଲା।

ରାଜାଙ୍କ ସହିତ କଥାବାର୍ତ୍ତା ପରେ ମନ୍ତ୍ରୀ ବୁଝାଇ ଦେଲେ, "କାଲି ଶେଷଦିନ। ଆପଣ ଦୁହେଁ ଅବସ୍ଥା ସମ୍ଭାଳି ନେବେ ତ ଜାଣନ୍ତୁ ଆପଣମାନଙ୍କର ଭାଗ୍ୟ ସବୁଦିନ ପାଇଁ ଖୋଲିଗଲା। କିନ୍ତୁ ଯଦି କିଛି ନ କରି ପାରିବେ ତେବେ ଏ ରାଜ୍ୟର ବିଧାନ ଅନୁସାରେ ଆପଣମାନଙ୍କ ମୁଣ୍ଡ କାଟି ହେବ।"

ରାତିରେ ଦୁହେଁ ବସି ବିଚାର କଲେ। ଦୁର୍ବୁଦ୍ଧି ବଙ୍କବୁଦ୍ଧିଙ୍କୁ କହିଲା, "କ'ଣ କରିବା? ଚାଲ ଆଜି ରାତି ଅଧରେ ପଳାଇବା। ଏ ସ୍ଥାନ ଛାଡ଼ି ନଚେତ୍ ମୃତ୍ୟୁ ଅନିବାର୍ଯ୍ୟ।"

"କିନ୍ତୁ ଆମେ କେତେଦୂର ଯାଇ ପାରିବା? ସକାଳୁ ସେମାନେ ଜାଣିବା ମାତ୍ରେ ଘୋଡ଼-ସବାର ପଠାଇ ଆମକୁ ଧରିଆଣି ମାରିବେ। ଏପରି ଅପମାନଜନକ ମୃତ୍ୟୁ ଅପେକ୍ଷା ଚାଲ ପାଣିରେ ପହଁରି ପହଁରି ଯାଇ ଜାହାଜବାଲାଙ୍କ ପାଖରେ ଛଦ୍ମବେଶରେ ଜୀବନ ଭିକ୍ଷା କରିବା ନହେଲେ ମରିବା।" ବଙ୍କବୁଦ୍ଧି କହିଲା।

ଅଧରାତି ବେଳକୁ ଦୁହେଁ ସମୁଦ୍ର ତଟରେ ପହଞ୍ଚି ପହଁରିବାକୁ ଆରମ୍ଭ କଲେ; ଅନ୍ଧ-କାରରେ ଜାହାଜ ସବୁ ରହିଛନ୍ତି। ଗୋଟିଏ ଜାହାଜରୁ କେବଳ ଆଲୋକ ଦେଖାଯାଉଥାଏ

ଓ କଥାବାର୍ତ୍ତା ଶୁଣୁଥାଏ । ଛୋଟ ଝିଅଟିଏ ତା' ଅଜା ସହିତ ଅଝଟ ଲଗାଇ କହୁଥାଏ, "ଅଜା ଲୁହନା ବାକ୍ସ ଭିତରେ କ'ଣ ଅଛି ? କହିଲେ ମୁଁ ଶୋଇପଡିବି ।"

ଝିଅ ଜିଦରେ ଅଟଳ ରହିଲା ।

"ଆଚ୍ଛା ତେବେ ଶୁଣ, ଲୁହା ବାକ୍ସ ଭିତରେ ପିତ୍ତଳ ବାକ୍ସ ଅଛି ତା' ଭିତରେ ଅଛି ରୁପା ବାକ୍ସ । ରୁପା ବାକ୍ସ ଭିତରେ ଅଛି ସୁନାର ବାକ୍ସ ଆଉ ସୁନା ବାକ୍ସରେ ଅଛି ହୀରାଟିଏ । ଏବେ ତୁ ଶୋଇପଡ଼ ।" ଅଜା କହିଲେ ।

ଏକଥା ଶୁଣି ଦୁଇ ଠକ ମନ ଆନନ୍ଦରେ ମୁଣ୍ଡି ଚଳା ଛାଡ଼ି ପୁଣି ନଗରୀକୁ ଲେଉଟି ଆସିଲେ । ସକାଳୁ ରାଜାଙ୍କୁ ବାକ୍ସ ବିଷୟରେ କହିଦେଲେ । ରାଜା ମହା ଖୁସି ହୋଇ ଜାହାଜବାଲାଙ୍କୁ ଖବର ଦେଲେ । ଜାହାଜବାଲା ହାରିଯାଇ ସାରା ସମ୍ପତ୍ତି ରାଜାଙ୍କୁ ଦେଇ ନିଜ ଦେଶକୁ ବାହୁଡ଼ି ଗଲା ।

ରାଜା ଦୁଇ ଠକଙ୍କୁ ବହୁତ ଧନସମ୍ପତ୍ତି ଦେଇ ରାଜଜ୍ୟୋତିଷ ବନାଇ ଦେଲେ । ପରେ ଦୁର୍ବୁଦ୍ଧି ବକ୍ରବୁଦ୍ଧିକୁ କହିଲା, "ଏମିତି ଆଉ କେତେଦିନ ଚଳିବା ?" ତା'ପରେ ଦୁହେଁ ବିଚାର କରି ଗୋଟିଏ ଉପାୟ ପାଞ୍ଚିଲେ ।

ପରଦିନ ବକ୍ରବୁଦ୍ଧି ରାଜାଙ୍କ ସହିତ ବସି ଗଳ୍ପ କରୁଛି, ଦୁର୍ବୁଦ୍ଧି କାନ୍ଦି କାନ୍ଦି ଯାଇ ସେଠାରେ ପହଞ୍ଚି କହିଲା, "ହାୟ ଦୁର୍ଭାଗ୍ୟ ଆମର ସବୁ ଜ୍ୟୋତିଷଶାସ୍ତ୍ର ଜଳିଗଲା । ମୁଁ ବହୁ ଚେଷ୍ଟା କରି ରକ୍ଷା କରି ପାରିଲି ନାହିଁ ।" କହି ନିଜର ଟିକିଏ ପୋଡ଼ିଯାଇଥିବା ହାତ ରାଜାଙ୍କୁ ଦେଖାଇଲା ।

ରାଜା ବ୍ୟସ୍ତ ହୋଇ ପଡିଲେ ଓ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଦୁଃଖ କରନାହିଁ । ମୁଁ ତୁମ ଦୁହିଁଙ୍କୁ ଜମିଜାଗା ଦେଇ ସୁଖରେ ରଖିବି ।"

ତା'ପରେ ରାଜଦତ୍ତ ସମ୍ପତ୍ତି ପାଇ ସେମାନେ ଆନନ୍ଦରେ ଓ ଆରାମରେ ଜୀବନ କଟାଇଲେ ।





# ସେନାପତି ନିର୍ବାଚନ

ମହାଚଳ ଦେଶରେ ଶାସନ କରୁଥା'ନ୍ତି ରାଜା ସିଂହକେତୁ । ତାଙ୍କ ସେନାପତି ହେଉଛନ୍ତି ବୀରବର୍ମା । ସାହସ, ପରାକ୍ରମ ଓ ଯୁଦ୍ଧବିଦ୍ୟାରେ ତାଙ୍କର ସମକକ୍ଷ କେହି ନଥିଲେ । କିନ୍ତୁ କାଳକ୍ରମେ ବୃଦ୍ଧାବସ୍ଥା ପ୍ରାପ୍ତ ହେବାରୁ ସେ କର୍ମରୁ ଅବସର ଗ୍ରହଣ କରିବାକୁ ଚାହୁଁଥିଲେ । ଦିନେ ରାଜା ଓ ମନ୍ତ୍ରୀ ବସି କଥାବାର୍ତ୍ତା ହେଉଥା'ନ୍ତି; ସୁଯୋଗ ଦେଖି ବୀରବର୍ମା ସେଠାରେ ପହଞ୍ଚି ନିଜର ଇଚ୍ଛା ନିବେଦନ କଲେ ।

ରାଜା କହିଲେ, "ତୁମେ ଅବସର ନେବାକୁ ସିନା ଚାହୁଁଛ କିନ୍ତୁ ମୁଁ ଦେବାକୁ ଚାହୁଁନାହିଁ । ତଥାପି ତୁମର ଇଚ୍ଛାକୁ ମୁଁ ସମ୍ମାନ ଦେବି । ତେଣୁ ତୁମେ ସେନାପତି ପଦପାଇଁ ଏକ ଉପଯୁକ୍ତ ବ୍ୟକ୍ତିଙ୍କୁ ମନୋନୀତ କରିବା ପରେହିଁ ଅବସର ଗ୍ରହଣ କରିବ । ମୁଁ ଭାବୁଛି ତୁମର ଦୁଇପୁତ୍ର ସବୁଦିଗରୁ ଏ ପଦ ପାଇଁ ଯୋଗ୍ୟ—ତୁମେ କୁହ ସେମାନଙ୍କ ମଧ୍ୟରୁ ଅଧିକ ଯୋଗ୍ୟ କିଏ ?"

"ମହାରାଜ, ଆପଣଙ୍କ କଥା ସତ୍ୟ ଯେ ଦୁହେଁ ସବୁ ବିଦ୍ୟାରେ ପାରଙ୍ଗମ । କିନ୍ତୁ ଦୁଇ ପୁତ୍ରଙ୍କ ମଧ୍ୟରେ କିଏ ଅଧିକ ଯୋଗ୍ୟ ମୁଁ କହିପାରିବି ନାହିଁ । ଏ କ୍ଷେତ୍ରରେ ସେନାପତି ପଦପାଇଁ ଆପଣଙ୍କର ନିର୍ବାଚନହିଁ ଅଧିକ ଉଚିତ୍ ହେବ ।" ବୀରବର୍ମା କହିଲେ ।

ରାଜା ମଧ୍ୟ ସେନାପତିଙ୍କ କଥାକୁ ସ୍ୱୀକାର କଲେ । ପରଦିନ ରାଜା ସେନାପତିଙ୍କ ଦୁଇ ପୁତ୍ର ଶୂରବର୍ମା ଓ ଜୟସିଂହଙ୍କୁ ଡକାଇ ଆଣି କହିଲେ, "ତମେ ଦୁହେଁ ଜାଣିଛ ଯେ ରାଜପଦ ପୈତୃକ ହେଲେ ମଧ୍ୟ ସେନାପତି ପଦ ପୈତୃକ ନୁହେଁ । ତଥାପି ତୁମେ ଦୁହେଁ ନିଜ ପିତାଙ୍କଠାରୁ ସବୁ ବିଦ୍ୟା ହାସଲ କରି

ପାରିଛ । ତଥାପି ତୁମ ଦୁହିଁଙ୍କ ମଧ୍ୟରୁ ଜଣକୁ ସେନାପତି ପଦ ପାଇଁ ନିର୍ବାଚନ କରିବାକୁ ହେବ । ପ୍ରସ୍ତୁତ ରହିଥାଅ । କାଲି ପରୀକ୍ଷା ହେବ ।"

ରାଜାଙ୍କ କଥା ଶୁଣି ଶୂରବର୍ମା କହିଲେ, "ମହାରାଜ, ଯୁଦ୍ଧବିଦ୍ୟା ଇତ୍ୟାଦିରେ ଆମେ ଦୁହେଁ ସମକକ୍ଷ ବୀର । କିନ୍ତୁ ସେନାପତି ପଦ ପାଇଁ ମୋର ବ୍ୟକ୍ତିଗତ ଭାବେ କୌଣସି ଅଭିରୁଚି ନାହିଁ । ଆପଣ ଏ କ୍ଷେତ୍ରରେ ମୋ ଭାଇକୁ ବାଛନ୍ତୁ ।"

ରାଜା ସିଂହକେତୁ କହିଲେ, "ତୁମକୁ ଯଦି ରାଜ୍ୟ ଚାହେଁ, ତେବେ ରାଜ୍ୟ ପାଇଁ ତୁମର ବ୍ୟକ୍ତିଗତ ରୁଚିବୋଧକୁ ତମେ ତ୍ୟାଗ କରିପାରିବ ନାହିଁ ?"

"ଆଜ୍ଞା, ଅବଶ୍ୟ ତାହା କରିପାରିବ ।"

"ତେବେ ପରୀକ୍ଷା ପାଇଁ ପ୍ରସ୍ତୁତ ହୁଅ ।"

ରାଜା ଦୁଇ ଭାଇଙ୍କୁ ଡାକି କହିଲେ, "ଶୁଣ, ସାମନାରେ ତିନିବଖରା ଘର । ସେଥିରେ ଭିନ୍ନ ରକମର ଜିନିଷ ଅଛି । ତୁମେ ଦୁହେଁ ସେଠାକୁ ଯାଇ ଦେଖିଆସ ଓ କୁହ ସେସବୁ ମଧ୍ୟରୁ କିଏ ସର୍ବାପେକ୍ଷା ତୁମର ପସନ୍ଦ ଓ କାହିଁକି ?"

ପ୍ରଥମେ ଶୂରବର୍ମାଙ୍କ ପାଳି ପଡ଼ିଲା । ସେ ଦେଖିଆସି କହିଲେ, "ମହାରାଜ, ତିନୋଟି କକ୍ଷ ମଧ୍ୟରୁ ଦ୍ୱିତୀୟଟି ମୋର ପସନ୍ଦ । ସେଥିରେ ଯୁଦ୍ଧସାମଗ୍ରୀ ଥିଲା ।"

ରାଜା ଓ ମନ୍ତ୍ରୀ ଅଳ୍ପ ହସିଲେ । ତା'ପରେ ପଡ଼ିଲା ଜୟସିଂହଙ୍କ ପାଳି । ଜୟସିଂହ



ଦେଖିଯାଇ ଫେରିଆସି କହିଲେ, "ମହାରାଜ, ଧନ ଥିବା କକ୍ଷହିଁ ମୋର ପସନ୍ଦ ।"

ରାଜା ପଚାରିଲେ, "କାହିଁକି ତୁମର ପସନ୍ଦ, କାରଣ ଦର୍ଶାଅ ।"

ଉତ୍ତରରେ ଜୟସିଂହ କହିଲେ, "ମହାରାଜ, ଏ ସଂସାରରେ ଧନହିଁ ଅଧିକ ମହତ୍ତ୍ୱପୂର୍ଣ୍ଣ ବସ୍ତୁ । ଧନ ସାହାଯ୍ୟରେ ମଣିଷ ଅନ୍ୟ ସବୁ କିଛି କରିପାରିବ । ଅନ୍ୟ ଦୁଇ କକ୍ଷରେ ଯୁଦ୍ଧସାମଗ୍ରୀ ଓ ଖାଦ୍ୟସାମଗ୍ରୀ ଅଛି । ସେସବୁ ଧନଦ୍ୱାରା ଅଣାଯାଇ ପାରିବ । ତେଣୁ ମୁଁ ଧନକୁ ଅଧିକ ମୂଲ୍ୟ ଦେଇଛି ।"

ଜୟସିଂହଙ୍କ ଉତ୍ତରରେ ଅତ୍ୟନ୍ତ ପ୍ରସନ୍ନ ହୋଇ ସଭାସଦ୍‌ଗଣ କରତାଳି ଧ୍ୱନି କଲେ । ରାଜା ଖୁସି ହୋଇ ନିଜ ଗଳାରୁ ମୁକ୍ତାମାଳ କାଢ଼ି ଜୟସିଂହଙ୍କୁ ଦେଇ କହିଲେ, "ଜୟସିଂହଙ୍କର ଲୌକିକ ଜ୍ଞାନ ପ୍ରଶଂସନୀୟ ଅଟେ । ତେଣୁ ମୁଁ ତାଙ୍କୁ ସେନାପତି ପଦ ପାଇଁ ମନୋନୀତ କରୁଛି ।"

ସମସ୍ତେ ଆହୁରି ଥରେ କରତାଳି ଦେଲେ ଓ ହର୍ଷଧ୍ୱନି କଲେ । ରାଜା ପୁଣି କହିଲେ, "ଜୟସିଂହଙ୍କୁ ସେନାପତି ପଦ ଦେବାରେ ଆହୁରି ଏକ କାରଣ ରହିଛି । ଶୂରବର୍ମା ମଧ୍ୟ ଜୟସିଂହଙ୍କ ପରି ସବୁ ବିଦ୍ୟାରେ ପାରଙ୍ଗମ । କିନ୍ତୁ ଆରମ୍ଭରୁ ସେ ଏହି ପଦ ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ । ମୋ ବିଚାରରେ କେହି କୌଣସି କାମ ପାଇଁ ଅନିଚ୍ଛା ପ୍ରକାଶ କଲେ ତା' ଉପରେ କାମଟି ଲଦି ଦେବା ଉଚିତ୍ ନୁହେଁ; ବିଶେଷତଃ ସେନାପତି କାମ । କାରଣ ଏ କ୍ଷେତ୍ରରେ ସେନାପତି ଯୁଦ୍ଧକ୍ଷେତ୍ରକୁ ଯିବାକୁ ସଦା ପ୍ରସ୍ତୁତ ଥିବା ଆବଶ୍ୟକ । ସେନାପତି ପଦ ପାଇଁ ଯାହାର ଅଭିଳାଷ ନାହିଁ ତାକୁ କଦାପି ଦେବା ଉଚିତ୍ ହେବନାହିଁ ।"

ଦରବାରର ସମସ୍ତେ ରାଜାଙ୍କ କଥାକୁ ବହୁତ ଖୁସିରେ ଅନୁମୋଦନ କଲେ । ତା'ପରେ ରାଜା ଶୂରବର୍ମାଙ୍କୁ ଦରବାରରେ ଅନ୍ୟ ଏକ ସମ୍ମାନଜନକ ପଦ ଦେଲେ ।





# ଭଗବାନ ସାକ୍ଷୀ

କୁନ୍ଦନପୁର ଗ୍ରାମରେ ଗୋବର୍ଦ୍ଧନରାଜ ନାମକ ଜଣେ ବଡ଼ ଡ଼ାକୁ ଥାଏ । ତା'ର ବାପା, ଜେଜେବାପା ମଧ୍ୟ ସେହି ବିଦ୍ୟାରେ ଖୁବ୍ ଦୁର୍ନାମ ଅର୍ଜନ କରିଥିଲେ । ମନେହୁଏ ଡ଼ାକୁବିଦ୍ୟା ତାଙ୍କର ବଂଶଗତ ହୋଇଗଲାଣି । ଗୋବର୍ଦ୍ଧନର ଭଉଣୀର ପୁଅଟିଏ ଥାଏ, ତା' ନାମ ଭଗବାନ । ସିଏ ତ ଜନ୍ମରୁ ସେ ବିଦ୍ୟାରେ ସିଦ୍ଧ । ଯେତେବେଳେ ସେ ଟିକିଏ ବଡ଼ ହୋଇଗଲା ତା' ମା' ଭଗବାନକୁ ମାମୁଁ ପାଖକୁ ପଠାଇଦେଲା ଡ଼ାକୁ ବିଦ୍ୟାକୁ କରାୟତ୍ତ କରିବାକୁ । କିନ୍ତୁ ଭଗବାନର ବୁଦ୍ଧି ବହୁତ । ତା'ର କୌଶଳ ସବୁ ମାମୁଁଠାରୁ ମଧ୍ୟ ବହୁତ ବେଶି । ସେ ସହଜରେହିଁ ସବୁ କରିଦେଇ ପାରୁଥିଲା । ଭଗବାନ ମାମୁଁ ଘରେ ଥାଏ । ମାମୁଁ ତା' ଉପରେ ଏତେ ଖୁସି ହୋଇଥାଏ ଯେ ଯେତେବେଳେ ଡ଼କାୟତି କରିବାକୁ ବାହାରେ ଭଗବାନକୁ ସଦାବେଳେ ସାଙ୍ଗରେ ନେଇଯାଏ ।

ଥରେ ସେମାନେ ଗୋଟିଏ ପାଖ ଗାଁକୁ ଗଲେ । ସେ ଗାଁର ନ୍ୟାୟାଧୀଶ ବହୁତ ଭଦ୍ର ଓ ସଜ୍ଜନ ବ୍ୟକ୍ତି ଥିଲେ, ଧନୀ ମଧ୍ୟ ଥିଲେ । ପ୍ରାୟ ସବୁଦିନେ ଗ୍ରାମର ଭଲମନ୍ଦ ନ୍ୟାୟ ଅନ୍ୟାୟ ବୁଝିବା ପାଇଁ ସଂଧ୍ୟା ସମୟରୁ ଘରୁ ଚାଲିଯା'ନ୍ତି ଓ ଡେରିରେ ଘରକୁ ଫେରନ୍ତି । ସେହି ସୁଯୋଗ ଦେଖି ଡ଼ାକୁ ମାମୁଁ ଭଣଜା ଦୁହେଁ ସେଠାରେ ପଶିଲେ । ପଶିବା ପୂର୍ବରୁ ଭଗବାନ କହିଲା, "ମାମୁଁ ଆଜି ମୋତେ ଭୋକ ଲାଗୁଛି, ପ୍ରଥମେ ଖାଦ୍ୟ ସବୁ ଖୋଜି ଖାଇନେବା, ପରେ ଧନ ଖୋଜିବା ।"

"ଠିକ୍ ଅଛି । ସାବଧାନତା ସହକାରେ କରିବୁ । ମୁଁ ଉପର ମହଲାକୁ ଯାଉଛି । ତୁ ତଳ ମହଲାରେ ଖୋଜୁ ଥା' । କାମ ଶେଷ ହେଲେ ଯିଏ ଆଗ ଆସିବ ସେ ଏହି ଗଛମୂଳେ ଅନ୍ୟକୁ ଅପେକ୍ଷା କରିବ ।" ଗୋବର୍ଦ୍ଧନ କହିଲା ।

**ପଚିଶବର୍ଷ ତଳର 'ଜହ୍ନମାମା'ରୁ ଗୃହୀତ**



ନ୍ୟାୟାଧୀଶଙ୍କର ପିଲାପିଲି କେହି ନଥିଲେ । ଦୁହେଁ ବଡ଼ ଧାର୍ମିକ ଥିଲେ । ଅଧିକାଂଶ ଦିନ ବ୍ରତ ଉପବାସରେ ସେମାନଙ୍କର କଟେ । ସେଦିନ ଥିଲା ଏକାଦଶୀ । ସ୍ୱାମୀ ସ୍ତ୍ରୀଙ୍କର ଉପବାସର ଦିନ । ଦିନସାରା ଉପବାସ କରି ରାତିରେ ଖାଇବେ ବୋଲି ନ୍ୟାୟାଧୀଶଙ୍କ ପତ୍ନୀ ଖିରି, ଚକୁଳିପିଠା ସବୁ କରି ସ୍ୱାମୀଙ୍କୁ ଅପେକ୍ଷା କରି କରି କ୍ଳାନ୍ତ ହୋଇ ଟିକେ ଶୋଇ ପଡ଼ିଥାନ୍ତି । ଘରର ଭିତର ବାରଣ୍ଡାରେ ଶୋଇ ପଡ଼ିଛନ୍ତି ।

ଗୋବିନ୍ଦ ତ ଉପର ମହଲକୁ ଚାଲିଗଲା । ଭଗବାନ ବଦଳେଇ ଚୋର ପାଦ ଚପି ଚପି ଭିତରେ ପଶିଲା । ଖିରି ପିଠାର ବାସ୍ନାରେ ତା' ପାଟିରୁ ଲାଳ ବୋହିଲା । ଏଣେ ପେଟରେ ଭୋକ । ସେ ସେଠାରେ ବସିପଡ଼ି ଖାଇବାକୁ ଲାଗିଲା । ଖାଦ୍ୟ ଶେଷ ହେବା ପର୍ଯ୍ୟନ୍ତ ସେ ଖାଇ ଚାଲିଲା । ଆଜି ତା'ର ଭୋକବେଳେ ଖାଇବାର ଯେଉଁ ସନ୍ତୋଷ ପାଇଲା, ତାହା ସାରା ଜୀବନରେ କେବେ ମଧ୍ୟ ପାଇନାହିଁ ।

ଖାଇସାରି ସେ ଚୁପ୍‌ଚାପ୍ ଖସି ଯିବାକୁ ଚାହୁଁଥିଲା, ଠିକ୍ ଏତିକିବେଳେ କେହି ବାହାର ଦ୍ୱାରରେ ଠକ୍ ଠକ୍ ଆବାଜ କଲା ।

ଭଗବାନ ଅନୁମାନ କରିନେଲା ଘର ମାଲିକ ଫେରିଲେ । ପୁଣି ଭୋକରେ ଫେରିଥିବାରୁ ମାଲିକ ନିଶ୍ଚୟ ସିଧାସଳଖ ରୋଷାଶାଳ ପଟେ ଆସିବେ । ଏଇସବୁ ଭାବି ସେ ଯାଇ ଗୋଟାଏ ପଟା ଭାଡ଼ିପରି ହୋଇଛି ତା' ଉପରେ ଚଢ଼ି ବସିଲା ।

ଏହା ଭିତରେ ମାଲିକଙ୍କ ସ୍ତ୍ରୀଙ୍କ ନିଦ ମଧ୍ୟ ଭାଙ୍ଗିଗଲା । ସେ ଉଠି ବସିଲେ । ଭଗବାନ ଭାଡି ଉପରେ ବସି ଉତ୍କଣ୍ଠିତ ଭାବରେ ଅପେକ୍ଷା କରିଥାଏ କ'ଣ ହେବ ଦେଖିବାକୁ ।

ତା'ର ଅନୁମାନ ଠିକ୍ ହେଲା । ମାଲିକ ଆସି ସିଧା ଖାଦ୍ୟ ପାଖରେ ହାଜର । ସେ ତାଙ୍କ ସ୍ତ୍ରୀଙ୍କୁ କହିଲେ, "ଖାଦ୍ୟ ପ୍ରସ୍ତୁତ କରି ରଖିଛ ତ ? ଶୀଘ୍ର ମୋତେ ଦେଇ ଦେଇ ତୁମେ ବସ ।"

"ହଁ, ହଁ, ଦେଉଛି । କେତେବେଳୁ ତିଆରି କରି ରଖିଛି । ତୁମରି ଅପେକ୍ଷାରେ ଥିଲି ।"

ଏତିକି କହି ବସ୍ତୁର ସ୍ତ୍ରୀ ଖାଦ୍ୟ ସବୁ ରଖିଥିବା ପାତ୍ର ମାନଙ୍କର ଢାଙ୍କୁଣୀ ଖୋଲି ଦେଖିଲେ ବେଳକୁ ସବୁ ଖାଲି । ସେ ବ୍ୟସ୍ତ ହୋଇ କହି ଉଠିଲେ, "ଆରେ ଖାଦ୍ୟ ସବୁ କିଏ ଖାଇଛି ? କମିତି ସବୁଗୁଡିକ ଖାଲି ହୋଇଗଲା ?"

"କ'ଣ ଖାଲି ହୋଇଗଲା ? ମୁଁ ଆସିବା ପର୍ଯ୍ୟନ୍ତ ମଧ୍ୟ ଅପେକ୍ଷା କରି ପାରିଲ ନାହିଁ ? ପୁଣି ଖାଇ ଦେଇଛ ?" ମାଲିକ କ୍ରୋଧରେ ପଚାରିଲେ ।

"କ'ଣ ହେଉଛି! ତୁମକୁ ଖାଇବାକୁ ଦେବା ଆଗରୁ ମୁଁ କେବେ ଖାଏ ? ମୁଁ ଖାଦ୍ୟ ସବୁ ଖାଇଛି ନା ନାହିଁ, ଏକଥା ଭଗବାନ ଦେଖିଛନ୍ତି, ସେହିଁ ମୋର ସାକ୍ଷୀ ।" ପତ୍ନୀ କହିଲେ ।

"ତମଛଡ଼ା ଏ ଘରେ ଆଉ କିଏ ଅଛି କି ? କିଏ ଏକଥା କରିପାରେ ? ଖାଇଛ ତ ଖାଇଛ ମୋ କଥା ଟିକିଏ ବି ଚିନ୍ତା କଲନାହିଁ । ପୁଣି ଏତେ ମିଛ ? ଅବଶ୍ୟ ତମେ ଦୟାପଣିଆ ଦେଖାଇ ଆଉ କାହାକୁ ଦେଇ ଦେଇ ଥାଇ ପାର । କିନ୍ତୁ ମୁଁ କ'ଣ ଖାଇବି ସେକଥା ଭାବିବା ଉଚିତ ଥିଲା ତ! ଠିକ୍ ଅଛି । ଏବେ ଦୁଇ ଗୁଣ୍ଠା ବସିଲେ ସତକଥା କହିବ ।" ଏତିକି ଭୋକଜ୍ୱାଳାରେ କ୍ରୋଧବଶତଃ ସେ କହି ପତ୍ନୀଙ୍କୁ ପିଟିବାକୁ ଗଲେ ।

ଏତେ ମିଥ୍ୟାଚାର ଓ ନିଷ୍ଠୁରତା ସହି ନପାରି ଭଗବାନ ଦୁହିଁଙ୍କ ମଝିକୁ ଡେଇଁ ପଡ଼ିଲା । ସେ



କହିଲା, "ତୁମ ପତ୍ନୀ ଯାହା କହୁଛନ୍ତି ଠିକ୍ । ସେ ସବୁ ଖାଦ୍ୟ ତିଆରି କରି ରଖିଥିଲେ । ମୁଁ ଭଗବାନ । ମୋତେ ପ୍ରବଳ କ୍ଷୁଧା ହେବାରୁ ମୁଁ ସେସବୁ ଖାଇଛି । ତମେ ତାଙ୍କୁ କାହିଁକି ପିଟିବାକୁ ବାହାରିଛ ?

ଠିକ୍ ସେତିକି ବେଳେ ବାହାରୁ ଖୁବ୍ ଧୀର ଗଳାରେ କିଏ ଡାକିଲା, "ଭଗବାନ !"

"ହଁ ଆସୁଛି" କହି ସେ ଧୀରେ ଧୀରେ ଘରୁ ବାହାରିଗଲା ।

ଏଣେ ଗୋବିନ୍ଦରାଜ ଉପର ମହଲାରୁ ବେଶି କିଛି ପାଇନାହିଁ । ରୋଷେଇ ଘର ପଛରୁ ଖାଦ୍ୟ ବସ୍ତୁ ନେଇ ପାଟି ଶୁଭୁଥିଲା । ଗୋବିନ୍ଦ ଭାବିଲା କି ଭଣଜା ନିଶ୍ଚୟ ଧରି ପଡୁଛି । ତେଣୁ ସେ

ଧୀରେ ଧୀରେ ଭଗବାନର ନାମ ଧରି ଡାକିଲା । ଭଗବାନ ହସି ହସି ଘରର ମାଲିକ ପରି ନିର୍ଭୟରେ ଭିତରୁ ବାହାରି ଆସିଲା । ମାମୁଁ ଭଣଜା ଦୁହେଁ ମିଶି ଫେରିଲେ । ବାଟ ଚାଲୁ ଚାଲୁ ସବୁ ଘଟଣା ଭଣଜା ମାମୁଁକୁ କହିଲା । ମାମୁଁ ସବୁକଥା ଶୁଣି କହିଲା, "ଯଦି ଅସଲ ଡ଼ାକୁ କେହି ଥାଏ ତ ତେବେ ସିଏ ତ ତୁ । ଚୋରି କରି, ଘରର ମାଲିକକୁ ଚୋରି କଥା କହି ପୁଣି ନିର୍ଭୟରେ ସେଠାରୁ ବାହାରି ଆସିଲୁ—ବାଃ ।" ଗୋବିନ୍ଦ ଭଣଜାକୁ ଖୁବ୍ ପ୍ରଶଂସା କଲା ।

ଏଣେ କିଛି ସମୟ ପରେ ହଠାତ୍ ନ୍ୟାୟାଧୀଶଙ୍କ ପତ୍ନୀ ଚିତ୍କାର କରି କହିଲେ, "ଆରେ, ଏତେ କଥା କହି ଚାଲିଗଲା ସିଏ କିଏ ? ସିଏ ତ ଚୋର । ଧର, ଧର ତାକୁ ।"

"ଏଁ ଚୋର ?" କହି ନ୍ୟାୟାଧୀଶ ବାହାରକୁ ଦୌଡ଼ିଲେ । କିନ୍ତୁ ଇତିମଧ୍ୟରେ ଚୋର ଚମ୍ପଟ ଦେଇ ସାରିଥାଏ । ପରେ ପତ୍ନୀ ପୁଣି ଖାଇବା ତିଆରି କଲେ ଓ ଦୁହେଁ ମିଶି ଖାଇଲେ ।

ଏଣେ ଘରେ ପହଞ୍ଚି ଗୋବିନ୍ଦ ତା' ସ୍ତ୍ରୀକୁ ସବୁ କଥା କହି ଭଣଜାର ପ୍ରଶଂସା କରି କହିଲା, "ବୁଦ୍ଧି ତ ବହୁତ, ଉପସ୍ଥିତ ବୁଦ୍ଧି ମଧ୍ୟ ଆହୁରି ଅଧିକ । କିନ୍ତୁ ଥରେ ସିନା ଏମିତି ହୋଇଗଲା । ସବୁବେଳେ କ'ଣ ଏପରି ହେବ ? ତମେ ଏଣିକି ଗୋଟିଏ କଥା ମନେରଖ । ଆମେ ଯେବେ ଚୋରି କରିବାକୁ ବାହାରିବୁ, ତମେ ପ୍ରଥମେ ଦେଖିବ ଯେ ଭଣଜା ଯେପରି ଖାଲି ପେଟରେ ନ ଯାଏ ।"

କିନ୍ତୁ ଭଗବାନର ମନ କାହିଁକି କେଜାଣି ବଦଳିଗଲା । ସେ ଭାବିଲା, ମୋର ଯଦି ଏତେ ସାହସ, ତେବେ ମୁଁ ସାମାନ୍ୟ ଚୋର ହୋଇ କାହିଁକି ଜୀବନ ବିତାଇବି ? ସେ ଯାଇ ସୈନ୍ୟ-ଦଳରେ ଯୋଗଦେଲା ଓ ଯଥା ସମୟରେ ପଦୋନ୍ନତି ପାଇଲା । ସେତିକି ନୁହେଁ, ମାମୁଁର ଚୋର ଅଭ୍ୟାସ ମଧ୍ୟ ସେ ଛଡ଼ାଇ ଦେଲା ।





## ବିଦ୍ୟୁତ ବୃକ୍ଷ

ଇଂଲଣ୍ଡର ଓକ୍ ବୃକ୍ଷ ଓ ପପ୍ଲାର ବୃକ୍ଷ ଉପରେହିଁ ପ୍ରାୟ ବଜ୍ର ପଡ଼ିଥାଏ ।

"ଓଟପକ୍ଷୀ ବିପଦ ପଡ଼ିଲେ ନିଜ ମୁଣ୍ଡକୁ ବାଲି ଭିତରେ ପୋତି ପକାଏ"— ଏପରି ଯେଉଁ ଜନରବ ଶୁଣାଯାଏ ତାହା ସମ୍ପୂର୍ଣ୍ଣ ମିଥ୍ୟା । କିନ୍ତୁ ବିପଦ ଆସିଲେ ସେ ମୁଣ୍ଡକୁ ତଳକୁ କରି କାନପାତି ଶୁଣେ । ବିପଦ ବିଷୟରେ ନିଶ୍ଚିତ ହେଲେ ଅନ୍ୟ ପଶୁପକ୍ଷୀଙ୍କ ପରି ଦୂରକୁ ଚାଲିଯାଏ ।






## ଲାଭା

ତରଳ ଲାଭାର ତାପମାନ ପ୍ରାୟ ୪୦୦୦ ଡିଗ୍ରୀ ଫାରେନହିଟ୍ ହୋଇଥାଏ ।

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳ ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।
* ସରଳ ଓ ସଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।
* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।
* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।
* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।
* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୁରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍ଟନ୍ ଏଜେନ୍ସିଜ୍

ଚନ୍ଦାମାମା ବିଲ୍ଡିଙ୍ଗ୍,

# ଫଟୋ ପରିଚୟ ପ୍ରତିଯୋଗିତା : ପୁରସ୍କାର ୫୦

ପୁରସ୍କୃତ ପରିଚୟୋକ୍ତି ନଭେମ୍ବର ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



M. Natarajan

★ ଉପରୋକ୍ତ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ସେପ୍ଟେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ଠିକଣା ପୋଷ୍ଟକାର୍ଡରେ ଲେଖି ନିମ୍ନ ଠିକଣାରେ ପଠାନ୍ତୁ :

**ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬**

---

## ଜୁଲାଇ '୮୮ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : ବିନା ଚିକିତ୍ସାରେ ରୋଗ ପାଏନା ଛୁଟି ।

ଦ୍ୱିତୀୟ ଫଟୋ : ବିନା ଇନ୍ଧନରେ ଯେଣୁ ଚଳେନା ଗାଡ଼ି ॥

ପୁରସ୍କାର ବିଜେତା : ଅଭିଜିତ୍ ସତୀଶ କୁମାର, ସିଂହଭୂମ (ବିହାର)

ବିଜେତାଙ୍କୁ ଅଭିନନ୍ଦନ, ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗସ୍, ବଡପଲନି, ମାଡ୍ରାସ-୬୦୦୦୨୬

ବିଜ୍ଞାପନ ସମ୍ବନ୍ଧେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେସନସ୍, ଚନ୍ଦାମାମା ବିଲ୍ଡିଙ୍ଗ୍, ବଡପଲନି, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026
Published by B. VISHWANATHA REDDI on behalf of
ma Buildings

# "CRIPPLE"

## The word can maim a child for life.

Imagine not being able to race your best friend. Imagine not having a best friend. Imagine being struck by Poliomyelitis before you even know the word. Or what it means. And be called a "cripple" for life.

Every year, Poliomyelitis or Polio strikes 275,000 children in India. In rural India, 1 in every 150—200 surviving newborn is in danger of developing polio unless urgent preventive measures are taken. And, while you read this, there are 1.6 million polio-stricken children in the country, most of them handicapped for life. If only they had been immunized... in time.

**PolioPlus**

*The Rotarian Relief Programme*

Rotary International has embarked on a world-wide immunization programme called PolioPlus. Through this programme, Rotary will provide all polio vaccines necessary for upto 5 consecutive years, for children in countries around the world.

Plus immunization against common childhood diseases like measles, diphtheria, tuberculosis, tetanus and whooping cough—-diseases which take 3.5 million young lives in the developing world, every year.



**PolioPlus**

*Rotary International Campaign*
*TO IMMUNIZE THE CHILDREN OF THE WORLD*

*Cut and mail to :*
**Chairman**
**POLIOPLUS CAMPAIGN TRUST**
128, Golf Links
New Delhi-110 003.

Anil Kumar

**Here's what You Can Do**

YES, WE WISH TO SUPPORT THE POLIOPLUS CAMPAIGN TRUST

We enclose our Cheque/Draft of Rs. ...........

Name ........................................

........................................

Designation ..............................

........................................

Company Address ......................

........................................

Phone No. ................................

*Cheques/Drafts should be drawn in favour of POLIOPLUS CAMPAIGN TRUST payable in Bombay; Contributions are exempted from income tax under section 80 (G) of the Income Tax Act, 1961.*

